# ଦେଶ, ବିଦେଶ ଓ ପ୍ରଦେଶ

ଅବସର ବେଉରିଆ

# Desha, Videsha and Pradesha

Abasar Beuria

**ପ୍ରକାଶକ**
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଭୌମ ନଗର
ଭୁବନେଶ୍ୱର - ୭୫୧୦୦୧

*Published by*
**LARK BOOKS**
Subarnarekha Chambers
Bhauma Nagar,
Bhubaneswar - 751001

ପ୍ରଚ୍ଛଦ : ଲଳିତ କହଁର

Cover : Lalit Kahanra

ପ୍ରଥମ ପ୍ରକାଶ - ୨୦୦୮

First Edition - 2008

ମୁଦ୍ରଣ
ସୋଭନ୍
ଆଚାର୍ଯ୍ୟ ବିହାର
ଭୁବନେଶ୍ୱର

*Printed at*
**Sovan**
Acharya Vihar
Bhubaneswar - 751 013

ପଚାଶ ଟଙ୍କା ମାତ୍ର

Rupees Fifty Only

**ISBN- 81 - 7375 - 150 -1**

# ନିଜ କଥା

ବିଦେଶ ସେବାରୁ ଅବସର ଗ୍ରହଣ କରି ନିଜ ପ୍ରଦେଶକୁ ପ୍ରତ୍ୟାବର୍ତ୍ତନ କରିବା ପରେ ଓଡ଼ିଶାର ଦୃଶ୍ୟକ୍ରମ ନୈରାଶ୍ୟଜନକ ମନେହେଲା । ମୂଲ୍ୟବୋଧର ଅବକ୍ଷୟ ଓ କର୍ମସଂସ୍କୃତି, ଯାହାକୁ ଇଂରାଜୀରେ ୱାର୍କ କଲଚର କୁହାଯାଏ, ତାର ଅନୁପସ୍ଥିତିରେ ବିଭବଶାଳୀ ଐତିହ୍ୟ ଓ ପ୍ରାକୃତିକ ପ୍ରାଚୁର୍ଯ୍ୟ ସତ୍ତ୍ୱେ ଓଡ଼ିଶାବାସୀଙ୍କ ବର୍ତ୍ତମାନର ମାନସିକତା ମନରେ ଆଘାତ ଦେଲା । ଏଥି ସହିତ ଜଗତୀକରଣ ଓ ଟେକ୍ନୋଲଜି ବିପ୍ଳବ ଓ ବିବର୍ତ୍ତନର ପ୍ରଚଣ୍ଡ ସ୍ରୋତ ଯାହା ପାରମ୍ପରିକ ଢାଂଚାର ଯଥାର୍ଥତାକୁ ଚାଲେଂଜ କରୁଛି, ସେ ବିଷୟରେ ଅଜ୍ଞତା ଓ ସେ ସ୍ରୋତରୁ କିଛି ଆହରଣ କରିବାର ଅନିଚ୍ଛା ଆତ୍ମଘାତୀ ବୋଲି ମନେହେଲା । ଏସବୁ ବିଷୟରେ ମୋର ମତାମତ କତିପୟ ବଂଧୁ ଓ ସଭା ସମିତି ବକ୍ତବ୍ୟରେ ସୀମିତ ଥିଲା । ଦିନେ ବଂଧୁ ପ୍ରଫେସର ଗଣେଶ୍ୱର ମିଶ୍ର ମୋର ଅଭିମତ ଗୁଡ଼ିକୁ ପ୍ରବନ୍ଧ ଆକାରରେ ଓଡ଼ିଆ ସମ୍ବାଦପତ୍ର ଗୁଡ଼ିକରେ ପ୍ରକାଶ କରିବାକୁ ପରାର୍ମଶ ଦେଇଥିଲେ । କଲେଜ ଜୀବନ ଛାଡ଼ିବା ପରେ ଓଡ଼ିଆରେ ଲେଖିବାର ସୁଯୋଗ ପ୍ରାୟ ନଥିଲା । ତେଣୁ ପଂଇଚାଳିଶ ବର୍ଷ ପରେ ସତ କହିବାକୁ ଗଲେ ଓଡ଼ିଆରେ ଲେଖିବାର ଆତ୍ମବିଶ୍ୱାସ ନଥିଲା । ପ୍ରଥମେ ଗୋଟିଏ ଲେଖା ସନ୍ତର୍ପଣରେ ବଂଧୁ ସତ୍ୟ ମହାପାତ୍ରଙ୍କୁ ଦେଖାଇଲି ଏବଂ ନିଃସଙ୍କୋଚରେ ସଂଶୋଧନ କରିବାକୁ ଅନୁରୋଧ କଲି । ଫଳରେ ଲେଖାଟି 'ସମାଜ'ରେ ପ୍ରକାଶିତ ହେଲା । ଜନସାଧାରଣ, ଶୁଭାକାଂକ୍ଷୀ ଓ ପାଠକଙ୍କ ଦ୍ୱାରା ଆଦୃତ ହେଲା । ଏ ପୁସ୍ତକରେ ସନ୍ନିବେଶିତ ବେଶୀଭାଗ ପ୍ରବନ୍ଧ ଦୈନିକ 'ସମାଜ' ଓ 'ସମ୍ବାଦ'ରେ ପ୍ରକାଶିତ ହୋଇଛି । ଲେଖାଗୁଡ଼ିକ ପୁସ୍ତକ ଆକାରରେ ପ୍ରକାଶ କରିବାର ଉଦ୍ୟମ, ସହାୟତା ଓ ଉତ୍ସାହର ଉତ୍ସ ହେଇଛନ୍ତି ଓଡ଼ିଶାର ସ୍ୱନାମଧନ୍ୟ ପ୍ରକାଶକ ଲାର୍କ ବୁକ୍ସ ର ଶ୍ରୀ ମହେନ୍ଦ୍ର ମିଶ୍ର । ଏମାନଙ୍କର ସହଯୋଗ, ସମର୍ଥନ ଓ ପ୍ରୋତ୍ସାହନ ବିନା ଓଡ଼ିଆରେ ସାଂପ୍ରତିକ ସମସ୍ୟା ଗୁଡ଼ିକୁ ପ୍ରବନ୍ଧ ଆକାରରେ ରୂପାୟିତ କରିବାର ଦୁଃସାହସ ମୋ ପାଖରେ ନଥିଲା । ମୁଁ ସେମାନଙ୍କ ନିକଟରେ କୃତଜ୍ଞ । ପତ୍ନୀ ତୃପ୍ତିର ସହଯୋଗ ମଧ୍ୟ ପୁସ୍ତକଟିର ପ୍ରକାଶନରେ ସାହାଯ୍ୟ କରିଛି ।

ଏହି ପୁସ୍ତକଟିରେ ଥିବା ଲେଖାଗୁଡ଼ିକ ଯଦି କିଂଚିତ୍ ଭାବେ ପାଠକଙ୍କ ମନରେ ଆଲୋଡ଼ନ ସୃଷ୍ଟି କରିପାରିବ ତେବେ ଏ ପ୍ରଚେଷ୍ଟା ସଫଳ ବୋଲି ମନେ କରିବି ।

**ଅବସର ବେଉରିଆ**

# ସୂଚୀପତ୍ର





# ବର୍ତ୍ତମାନ ବିଶ୍ୱ ଓ ଆମେ

ବର୍ତ୍ତମାନ ବିଶ୍ୱର ବ୍ୟବସ୍ଥା ବିବର୍ତ୍ତନ ମଧ୍ୟ ଦେଇ ଦ୍ରୁତ ପରିବର୍ତ୍ତନ ମଧ୍ୟରେ ଗତି କରୁଛି । ଦ୍ରୁତ ପରିବର୍ତ୍ତନ ଯୋଗୁଁ ଆମେ ଏକ ରୋମାଞ୍ଚକର ସମୟ ମଧ୍ୟରେ ଗତି କରୁଛେ । ବିଶ୍ୱ ଇତିହାସରେ ଅତୀତରେ କେବେ ଏତେ ପରିବର୍ତ୍ତନ ଓ ବିବର୍ତ୍ତନ ଏପରି କ୍ଷୀପ୍ରଗତିରେ ଘଟିନଥିଲା । ହଜାର ହଜାର ବର୍ଷ ପୂର୍ବରୁ ଯେତେବେଳେ କୃଷି ସମ୍ପର୍କୀୟ ଜ୍ଞାନ ଓ କୌଶଳ ମଣିଷ ହାସଲ କଲା, ସେତେବେଳେ ଏହା ନିର୍ଦ୍ଦିଷ୍ଟ କେତୋଟି ସମାଜ ଓ ଗୋଷ୍ଠୀ ଭିତରେ ସୀମିତ ଥିଲା । କୃଷି ସମ୍ପର୍କୀୟ ଜ୍ଞାନ ଓ କୌଶଳ ପୃଥିବୀରେ ଅନ୍ୟ ଅଞ୍ଚଳକୁ ପ୍ରସାରିତ ହେବାକୁ ଦୀର୍ଘ ସମୟ ଲାଗିଲା । ଏହା ପରେ ହଜାର ହଜାର ବର୍ଷ ଅତିବାହିତ ହେବା ପରେ  ଆଉ ଏକ ବୈପ୍ଳବିକ ଜ୍ଞାନ ଓ କୌଶଳ ମଣିଷ ଆୟତ୍ତ କରି ପାରିଲା । ଏହି ନୂତନ ଜ୍ଞାନ ଯୋଗୁଁ ଶିଳ୍ପ ବିପ୍ଳବ ସମ୍ଭବ ହେଲା । ଶିଳ୍ପ ବିପ୍ଳବ ତିନିଶହ ବର୍ଷ ଧରି କେବଳ କେତୋଟି ରାଷ୍ଟ୍ର ଏବଂ ସମାଜ ମଧ୍ୟରେ ସୀମାବଦ୍ଧ ହୋଇ ବହୁଦିନ ରହିଗଲା । ପୃଥିବୀର ବହୁ ଅଞ୍ଚଳରେ ଲୋକମାନେ ଏବଂ ସମାଜ ସେ  ଜ୍ଞାନର ସୁଫଳ ଭୋଗ କରିପାରିଲେ ନାହିଁ  ।

ବର୍ତ୍ତମାନ ଜ୍ଞାନ ଓ ବିଜ୍ଞାନ କ୍ଷେତ୍ରରେ ଏକ ତୃତୀୟ ପର୍ଯ୍ୟାୟର ସ୍ରୋତ ପ୍ରଚଣ୍ଡଗତିରେ ବହିବାକୁ ଲାଗିଛି । ଏହା ଟେକ୍ନୋଲୋଜି ବା ପ୍ରଯୁକ୍ତି ଭିତ୍ତିକ । ଏହି ଟେକ୍ନୋଲୋଜି ବା ପ୍ରଯୁକ୍ତି ଭିତ୍ତିକ ଜ୍ଞାନ ବେଶୀଭାଗ ଲୋକଙ୍କର ଜୀବନ ଯାପନ ଶୈଳୀରେ ଅଭୂତପୂର୍ବ ପରିବର୍ତ୍ତନ ଆଣିଛି । ଏଥିଯୋଗୁଁ ଦେଶ ଦେଶ ଭିତରେ ଓ ଗୋଟିଏ ଦେଶରେ ଥିବା ବିଭିନ୍ନ ଅଞ୍ଚଳ ମଧ୍ୟରେ ଦୂରତ୍ୱ କମିଯାଇଛି । କର୍ମଯୋଗାଣ ବିନା ଉନ୍ନୟନ, କାଗଜ ଓ ଅଫିସ ବିନା କାମ ପ୍ରଭୃତି ଏହି ନୂତନ ଯୁଗରେ ବାସ୍ତବ ଘଟଣାରେ ପରିଣତ  ହେଲାଣି । ଏହି ପ୍ରଯୁକ୍ତି ଭିତ୍ତିକ ଉନ୍ନୟନ କ୍ଷୀପ୍ରଗତିରେ ସମଗ୍ର ବିଶ୍ୱକୁ ବ୍ୟାପିବାରେ ଲାଗିଛି ।

ଏକ ଆକଳନରୁ ଜଣାଯାଇଛି ଯେ ୨୦୦୪ ପର୍ଯ୍ୟନ୍ତ ୩୦୦ ବିଲିୟନ କମ୍ପ୍ୟୁଟର ଚିପ୍ ପୃଥିବୀରେ ଥିଲା ଏବଂ ପ୍ରତିବର୍ଷ ୭୦ ବିଲିୟନ କରି ଏହାର ସଂଖ୍ୟା ବଢ଼ିବାରେ ଲାଗିଛି । ଜାପାନରେ ସୁପର କମ୍ପ୍ୟୁଟର ୪୦,୦୦୦ ବିଲିୟନ ଗାଣିତିକ ରାଶିର ବିବିଧ ବିନ୍ୟାସ ବା ଗଣନା କରିପାରେ । ପୃଥିବୀରେ ଲୋକମାନଙ୍କ ପାଖରେ ଏକ ବିଲିୟନ ପି.ସି (ବ୍ୟକ୍ତିଗତ କମ୍ପ୍ୟୁଟର) ରହିଛି, ଅର୍ଥାତ ପ୍ରତି ସାତଜଣଙ୍କ ମଧ୍ୟରୁ ଜଣଙ୍କ ପାଖରେ ପି.ସି ରହିଛି । ତନ୍ମଧ୍ୟରୁ

ଅର୍ଦ୍ଧେକଙ୍କ ପାଖରେ ଇଣ୍ଟରନେଟ୍‌ର ସୁବିଧା ମଧ୍ୟ ରହିଛି । ପ୍ରଯୁକ୍ତି ଜ୍ଞାନର ପ୍ରବାହ ଖାଲି ପାଶ୍ଚାତ୍ୟ ଦେଶରେ ନୁହେଁ; ଏସିଆ, ଆଫ୍ରିକା, ଲାଟିନ୍ ଆମେରିକାର ଲୋକମାନଙ୍କର ଦୈନନ୍ଦିନ ଜୀବନରେ ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି ତାହା ଏବେ ସ୍ୱୀକୃତ ।

ଭାରତବର୍ଷର ଗ୍ରାମୀଣ ଏବଂ ସହରୀ ଜୀବନରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ଗତ କିଛି ବର୍ଷ ଭିତରେ ଆସିଛି ତାହା ଲକ୍ଷ୍ୟ କରିବାର କଥା । ସବୁପ୍ରକାର ସୂଚନା ଓ ବିଭିନ୍ନ ବିଷୟ ସମ୍ପର୍କରେ ତଥ୍ୟ ଏବେ ମୁହୂର୍ତ୍ତକ ମଧ୍ୟରେ ଆମ ପାଖରେ ଉପଲବ୍ଧ । ସିନେମା, ସଂଗୀତ, ଆମୋଦ ଏତଲିକି କଥାବାର୍ତ୍ତା ବିନିମୟ କରିବାର ସମସ୍ତ ସୁଯୋଗ ଆଜି ଆମର ଅତି ନିକଟରେ । ଏପରିକି ବର୍ତ୍ତମାନ ସମୟରେ ମୂଲ୍ୟବାନ ହୀରା କିଣିବାକୁ ହେଲେ ଆଉ ପୃଥିବୀର ଅନ୍ୟସ୍ଥାନକୁ ଯିବାକୁ ପଡ଼ିବନାହିଁ । ଗୋଟିଏ ହୀରାର ଓଜନ, ରଙ୍ଗ ଓ ତା'ର ଆକାର ଇତ୍ୟାଦି କମ୍ପ୍ୟୁଟର ମାଧ୍ୟମରେ ଦେଖି ଆପଣ ତାହା କିଣି ପାରିବେ । ଏପରି କିଣାବିକା କରିବା ବିଂଶ ଶତାବ୍ଦୀର ଶେଷ ଦଶକରେ ମଧ୍ୟ ସମ୍ଭବ ହୋଇପାରୁନଥିଲା ।

ତେଣୁ ଲୋକମାନେ କହିବାକୁ ଆରମ୍ଭ କଲେଣି ଯେ ପୃଥିବୀ ବର୍ତ୍ତମାନ ଆଉ ଗୋଲ ନୁହେଁ । ଏହା ଏକ ସମତଳ ଅଞ୍ଚଳ ଅର୍ଥାତ କେତେକ ଅର୍ଥରେ ରାଷ୍ଟ୍ରଗୁଡ଼ିକର ଭୌଗୋଳିକ ସୀମାରେଖାର ଯଥାର୍ଥତା ଓ ଉପଯୋଗିତା ଆଉ ନାହିଁ । ଏହାର ସୁଦୂର ପ୍ରସାରୀ ପରିଣାମ ବିଶ୍ୱରାଜନୀତିରେ ମଧ୍ୟ ଦେଖିବାକୁ ମିଳିଲାଣି । ଭାରତ -ପାକିସ୍ଥାନ, ମଧ୍ୟପ୍ରାଚ୍ୟ କିମ୍ବା ୟୁରୋପୀୟ ୟୁନିୟନ ଭଳି ଅଞ୍ଚଳରେ ଯେଉଁ ପରିବର୍ତ୍ତନ ସବୁ ଘଟିଛି, ସେଥିରେ ଏହି ବୈଷୟିକ ଜ୍ଞାନ କୌଶଳ ଓ ତା'ର ବ୍ୟାପକ ବ୍ୟବହାରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟକ୍ଷ୍ୟ ଟେଲିକାଷ୍ଟ ବ୍ୟବସ୍ଥା ଫଳରେ କ୍ରିକେଟ ଖେଳ ଦେଖିବା ପରି ଇରାକର ଯୁଦ୍ଧକୁ ଟେଲିଭିଜନରେ ଦେଖିବା ସମ୍ଭବ ହେଉଛି । ପୂର୍ବରୁ ଏହା କଳ୍ପନା ବାହାରେ ଥିଲା ।

ଗଚ୍ଛିତ ଖଣିଜ ସମ୍ପଦରେ ଭାରତରେ ଓଡ଼ିଶା ଗୋଟିଏ ଅଗ୍ରଣୀ ପ୍ରଦେଶ । ଜାତୀୟ ଜଳ ସମ୍ପଦର ପ୍ରାୟ ୧୫ ପ୍ରତିଶତ ଆମ ପ୍ରଦେଶରେ । ଏହାର ଜମି ଉର୍ବର । ତେଣୁ କୃଷି ଏବଂ ଶିଳ୍ପବିକାଶ ପାଇଁ ଏ ପ୍ରଦେଶରେ ଯେଉଁ ସୁଯୋଗ ରହିଛି ତାହା ଅନ୍ୟ ପ୍ରଦେଶରେ ନାହିଁ କହିଲେ ଚଳେ । ଏହା ବ୍ୟତୀତ ୪୮୦ କିଲୋମିଟର ଦୀର୍ଘ ବେଳାଭୂମି ମଧ୍ୟ ଆମର ରହିଛି । ଭିତ୍ତିଭୂମିର ବିକାଶ କରି ଆଧୁନିକ ବନ୍ଦର ନିର୍ମାଣ କରାଗଲେ ପର୍ଯ୍ୟଟନ ଓ ଆମଦାନୀ ରପ୍ତାନୀର ବିକାଶ ପାଇଁ ବିଶେଷ ସୁଯୋଗ ଓଡ଼ିଶାରେ ସୃଷ୍ଟି କରାଯାଇପାରିବ । ଏହି ସବୁ ସମ୍ଭାବନା ସତ୍ତ୍ୱେ ଆମ ପ୍ରଦେଶ ଆଜି ବି ଦେଶର ସବୁଠାରୁ ଦରିଦ୍ରତମ ପ୍ରଦେଶ । ଶିଶୁ ମୃତ୍ୟୁହାର ଏଠାରେ ସର୍ବାଧିକ । ନିରକ୍ଷରତାର ସଂଖ୍ୟା ମଧ୍ୟ ଓଡ଼ିଶାରେ ସବୁଠାରୁ ବେଶୀ । ପ୍ରଦେଶ ବାହାରେ ଓଡ଼ିଶାର ପରିଚୟ କଳାହାଣ୍ଡିର ଦାରିଦ୍ର୍ୟ ଏବଂ ଅନାହାରମୃତ୍ୟୁ ଯୋଗୁ । ଓଡ଼ିଶାବାସୀଙ୍କ ମଧ୍ୟରେ ମୁଖ୍ୟତଃ ତିନିଟି ଗୁଣର ଅଭାବ ରହିଛି । ଶୃଙ୍ଖଳା, ସ୍ୱାଭିମାନ ଏବଂ ଶାରୀରିକ ପରିଶ୍ରମ

ପାଇଁ ଅନିଚ୍ଛା । ଅନ୍ୟ ଅର୍ଥରେ ଆମେ ଡ଼ିଗ୍ନିଟି ଅଫ୍ ଲେବର ଯାହାର ପ୍ରକୃତ ଅର୍ଥ ଶ୍ରମର ମର୍ଯ୍ୟାଦା, ତାହା ବୁଝି ନାହୁଁ । ଉନ୍ନତଶୀଳ ଦେଶଗୁଡ଼ିକରେ ଶୃଙ୍ଖଳା ଏବଂ ଶାରୀରିକ ପରିଶ୍ରମ ବ୍ୟତୀତ ସାମଗ୍ରିକ ବିକାଶର କଳ୍ପନା କରିବା ଅସମ୍ଭବ । ଆମେ ଯଦି ଭାରତବର୍ଷର ଅନ୍ୟ ପ୍ରଦେଶ ଲୋକଙ୍କ ସଙ୍ଗେ ଆମକୁ ତୁଳନା କରିବା ତେବେ ଏହା ସ୍ପଷ୍ଟ ହୋଇଯିବ । ପଞ୍ଜାବ ହେଉ କିମ୍ବା କେରଳ, ବିକାଶ କ୍ଷେତ୍ରରେ ଏ ଦୁଇଟି ଗୁଣର ଅବଦାନ ଯଥେଷ୍ଟ ରହିଛି ।

ଓଡ଼ିଶା ମନେହେଉଛି ଗୋଟିଏ ବକ୍ତୃତାବହୁଳ ଓ ଭାଷଣ ସର୍ବସ୍ୱ ପ୍ରଦେଶ । ଏଠାରେ ବହୁ ସଭାସମିତି ହେଉଛି କିନ୍ତୁ ପ୍ରକୃତ କାର୍ଯ୍ୟ ବିଶେଷ ହେଉ ନାହିଁ । ଏଠାରେ ବେସରକାରୀ କଲେଜ ବହୁ ସଂଖ୍ୟାରେ ରହିଛି କିନ୍ତୁ ଉପଯୁକ୍ତ ଗୁଣାତ୍ମକ ଶିକ୍ଷା ନାହିଁ । ଏଠାରେ ଏନ୍.ଜି.ଓ.ଙ୍କ ସଂଖ୍ୟା ଅଗଣିତ କିନ୍ତୁ ସାମାଜିକ ଅର୍ଥନୀତି କ୍ଷେତ୍ରରେ କୌଣସି ଆଖିଦୃଶିଆ ପ୍ରଗତି ବା ସଚେତନତା ନାହିଁ । ସରକାରୀ କର୍ମଚାରୀ ସଂଖ୍ୟା ବେଶୀ କିନ୍ତୁ ଶାସନର ସ୍ଥିତି ? ଆମ୍ଭମାନଙ୍କର ନିଜର ମେଧା ଶକ୍ତି ଉପରେ ଆତ୍ମବିଶ୍ୱାସ ରହିଛି କିନ୍ତୁ ଏହି ଆତ୍ମବିଶ୍ୱାସ କାଳ୍ପନିକ । ଏହାର କାରଣ ଆମେ ନିଜକୁ ଦେଶ ବିଦେଶର ଅନ୍ୟ ମେଧାବୀ ବ୍ୟକ୍ତିମାନଙ୍କ ସହ ନିରପେକ୍ଷ ଭାବରେ ତୁଳନା କରୁନାହୁଁ । ଯଦି ଅନ୍ୟ ପ୍ରଦେଶର ଲୋକଙ୍କ ଭାଷା, ସଂସ୍କୃତି, କଳା ଓ ଐତିହ୍ୟର ସମୀକ୍ଷା କରାଯିବ, ତେବେ ଦେଖାଯିବ ଯେ ସେମାନେ ମଧ ଗୋଟିଏ ଗୋଟିଏ ଉନ୍ନତ ସଂସ୍କୃତିର ଅଧିକାରୀ । ଓଡ଼ିଶାରେ ଏ ସବୁ ଘଟୁଛି କାରଣ ଆମେ ନିଜକୁ ଗୋଟିଏ ସଂକୀର୍ଣ୍ଣ ଗଣ୍ଡି ମଧରେ ଆବଦ୍ଧ କରି ରଖିଛୁ ଏବଂ ଏହି ସଂକୀର୍ଣ୍ଣତା ମଧରେ ବଞ୍ଚିବାକୁ ଆମେ ଭଲ ପାଉଛୁ । ଆତ୍ମନୀରିକ୍ଷଣ ଓ ଆତ୍ମସମାଲୋଚନା କରିବାର ଆବଶ୍ୟକତା ସମ୍ପର୍କରେ ଆମେ କେବେ ଚିନ୍ତା କରିନାହୁଁ । ଆମେ କହୁ ଆମର ବଡ଼ ଦେଉଳ, ବଡ଼ ଠାକୁର, ବଡ଼ ଦାଣ୍ଡ, ଉପସାଗରଟି ଆମ ପାଇଁ ମହୋଦଧି, କିନ୍ତୁ ଆମେ କେଉଁ ଅବସ୍ଥାରେ ସେହି ବଡ଼ ଦେଉଳ, ବଡ଼ ଠାକୁର ଏବଂ ମହୋଦଧିକୁ ରଖିପାରିଛୁ ?

ଓଡ଼ିଆମାନେ ଓଡ଼ିଶା ବାହାରେ ଓ ବିଦେଶରେ ପ୍ରତିଷ୍ଠା ଓ ସୁନାମ ଅର୍ଜନ କରୁଥିବାର ବହୁ ସମ୍ବାଦ ଗଣମାଧମରେ ପ୍ରକାଶ ପାଉଛି । ତାହା କ'ଣ ସତ ? ଏ ପର୍ଯ୍ୟନ୍ତ କେତେଜଣ ଓଡ଼ିଆ ବୈଜ୍ଞାନିକ, ଚିନ୍ତାନାୟକ, ଶିଳ୍ପପତି, କଳାକାର, ସଂଗୀତଜ୍ଞ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ସେମାନଙ୍କର ମୌଳିକ ଅବଦାନ ପାଇଁ ସୁନାମ ଅର୍ଜନ କରିଛନ୍ତି ? ସେପରି ଲୋକଙ୍କ ସଂଖ୍ୟା ଅତି ନଗଣ୍ୟ । କାଁ ଭାଁ କେତେକ ସରକାରୀ ଅଫିସର ଅନ୍ୟପ୍ରଦେଶମାନଙ୍କରେ କାର୍ଯ୍ୟ କରୁଛନ୍ତି । ଏତେ ଅଳ୍ପ ସଂଖ୍ୟକ ଓଡ଼ିଆ ଯଦି ବାହାରେ ନାମ କରନ୍ତି , ତେବେ ତାହା ସମଗ୍ର ଜାତିର ପ୍ରଗତିର ମାନଦଣ୍ଡ ନୁହେଁ । ଅନ୍ୟ ପ୍ରଦେଶର ଲୋକଙ୍କର ବିଭିନ୍ନ କ୍ଷେତ୍ରରେ ସଫଳତାକୁ ତୁଳନା କଲେ ଏହା ସ୍ପଷ୍ଟ ହେବ । ଆମ ପ୍ରଦେଶରେ ସରକାରୀ ଚାକିରୀରେ ନିଯୁକ୍ତି ପାଇଲେ କିମ୍ବା ସର୍ବଭାରତୀୟ ସେବା କ୍ଷେତ୍ରରେ ମନୋନୀତ ହେଲେ ସ୍ଥାନୀୟ ଗଣମାଧମ ଏହାକୁ ପ୍ରଚାର କରି ଏଭଳି ଏକ ପରିବେଶ ସୃଷ୍ଟି କରନ୍ତି ଯେ ମନେ ହୁଏ ଏହା ହିଁ ପ୍ରକୃତ

ମେଧାଶକ୍ତି ଏବଂ କାର୍ଯ୍ୟ ନିପୁଣତାର ସର୍ବୋତ୍କୃଷ୍ଟ ମାନଦଣ୍ଡ । ଏପରି ଭାବନା ଆମ ହୀନମନ୍ୟତା ଓ ଦାରିଦ୍ର୍ୟର ପରିଚୟ । କାରଣ ଦାରିଦ୍ର୍ୟ ଯୋଗୁଁ ଜୀବନର ଅନିଶ୍ଚିତତା ଲାଗି ରହିଥିବା ବେଳେ ଚାକିରୀର ସ୍ଥାୟୀତ୍ୱ ଆମ ପାଇଁ ସବୁଠାରୁ ବଡ଼ କଥା ।

ଶୁଣାଯାଏ ଓଡ଼ିଶାର ଲୋକମାନେ ବର୍ତ୍ତମାନ ଅନ୍ୟପ୍ରଦେଶକୁ ଯାଇ ବହୁତ ସୁନାମ କରୁଛନ୍ତି । ଅନ୍ୟ ପ୍ରଦେଶରେ ସାମାନ୍ୟ କେତେଜଣ ସରକାରୀ ଉଚ୍ଚପଦସ୍ଥ ଅଫିସରଙ୍କୁ ଛାଡ଼ିଦେଲେ ବେଶିଭାଗ ଲୋକ ସୁରଟ୍ ଏବଂ ଅହମଦାବାଦ ସହରର କଳକାରଖାନାରେ କୁଲି ଓ ଅର୍ଦ୍ଧକୁଶଳୀ କାରିଗର ରୂପେ କାମ କରନ୍ତି । ସେହିଭଳି ଆନ୍ଧ୍ରପ୍ରଦେଶର ସହରମାନଙ୍କରେ ହୋଟେଲ, ରେଷ୍ଟୋରାଁରେ କିମ୍ବା ଦାଦନ ଶ୍ରମିକଭାବେ ଓଡ଼ିଆମାନେ କାମ କରନ୍ତି । କର୍ଣ୍ଣାଟକରେ ସଫ୍ଟୱେୟାର ଇଞ୍ଜିନିୟରଙ୍କ ତୁଳନାରେ ଓଡ଼ିଆ ସିକ୍ୟୁରିଟି ଗାର୍ଡ଼ଙ୍କ ସଂଖ୍ୟା ବେଶୀ । ବଙ୍ଗଳାରେ ଓଡ଼ିଆମାନେ ତ ସହଜରେ ପାଣିମିସ୍ତ୍ରୀ, ମାଳି କିମ୍ବା ରାନ୍ଧୁଣିଆ । ଏହାର ଅନ୍ୟ ଏକ କାରଣ ହେଉଛି ଆମର ସ୍ଥାନୀୟ ଗଣମାଧ୍ୟମ ପ୍ରଦେଶର ଉନ୍ନତି ପାଇଁ ଯେଉଁ ଦିଗ୍‌ଦର୍ଶନ ଓ ଭୂମିକା ଗ୍ରହଣ କରିବା ଦରକାର ତାହା କରିନାହିଁ । ନିକଟ ଅତୀତରେ ଇନ୍‌ଫୋସିସ୍‌ର ନାରାୟଣ ମୂର୍ତ୍ତୀ ଓଡ଼ିଶାରେ ତାଙ୍କ କମ୍ପାନୀର ଶାଖା ବହୁଦିନ ଧରି ପ୍ରତିଷ୍ଠା କରିଥିବା ସତ୍ତ୍ୱେ ବିଶେଷ ସଫଳ ହୋଇନଥିବାର କାରଣ ଦର୍ଶାଇଥିଲେ । ତାଙ୍କ ମତରେ ପ୍ରତିଭାବାନ ଜନସଂଖ୍ୟାର ଅଭାବ ଓଡ଼ିଶାରେ ରହିଛି । ନାରାୟଣ ମୂର୍ତ୍ତୀ ଜଣେ ବିଜ୍ଞ, ଅନୁଭବୀ ଏବଂ ସଫଳ ଉଦ୍ୟୋଗୀ । ତାଙ୍କର ଏହି ବକ୍ତବ୍ୟ ଆମେ ଅନୁଧ୍ୟାନ କରିବା ଉଚିତ୍ । ବି.ପି.ଓ.ରେ କାର୍ଯ୍ୟ କରିବା ଏବଂ ସଫଳ ସଫ୍ଟୱେୟାର ଇଞ୍ଜିନିୟର ହେବା ଏକା କଥା ନୁହେଁ । ଆମ୍ଭମାନଙ୍କୁ ମଧ୍ୟ ମନେ ରଖିବାକୁ ହେବ ଯେ ଭାରତବର୍ଷ ଭଳି ଲୋକବହୁଳ ଦେଶରେ ଅର୍ଥନୈତିକ ପ୍ରଗତି କ୍ଷେତ୍ରରେ କୃଷି ଓ ଶିଳ୍ପର ଭୂମିକାକୁ ଉପେକ୍ଷା କରିହେବ ନାହିଁ ।

ଭୁବନେଶ୍ୱରରେ ବସି ସମଗ୍ର ରାଜ୍ୟକୁ ଦେଖିଲେ ମନେହୁଏ ଯେ ଆମର ଲୋକେ ନିଜ ପରିସ୍ଥିତିରେ ମୋଟାମୋଟି ସନ୍ତୁଷ୍ଟ । ମୋର ମନେପଡୁଛି ୨୦୦୪ ସାଧାରଣ ନିର୍ବାଚନ ପୂର୍ବରୁ ଗୋଟିଏ ଗଣମାଧ୍ୟମର ସର୍ଭେରେ ଓଡ଼ିଶାର ୭୦ଭାଗରୁ ବେଶୀ ଲୋକ ଫିଲ୍‌ଗୁଡ୍ ସପକ୍ଷରେ ମତ ଦେଇଥିଲେ । ଏବେ ଦେଖାଯାଉଛି ଓଡ଼ିଶାର ଲୋକମାନେ କେବଳ ବର୍ଷାଋତୁକୁ ଛାଡ଼ିଦେଲେ ପୂଜାପର୍ବ, ଫେସ୍‌ଟିଭାଲ (ଉତ୍ସବ), ସଂଗୀତ ଓ ନୃତ୍ୟର ମହୋତ୍ସବରେ ବେଶ୍ କିଛି ସମୟ ଓ ସମ୍ବଳ ବିନିଯୋଗ କରୁଛନ୍ତି । ଶ୍ରୀକ୍ଷେତ୍ର ଉତ୍ସବ, ଏକାମ୍ର ଉତ୍ସବ, କୋଣାର୍କ ଉତ୍ସବ,ବେଳାଭୂମି ଉତ୍ସବ, ଏଭଳିକି ପ୍ରତି ଜିଲ୍ଲା ଏବଂ ବ୍ଲକ ସ୍ତରରେ ମହୋତ୍ସବମାନ ପାଳନ କରାଯାଉଛି ଏବଂ ବହୁକ୍ଷେତ୍ରରେ ଏଥିପାଇଁ ସରକାରୀ ସହାୟତା ଓ ପ୍ରୋତ୍ସାହନ ମଧ୍ୟ ମିଳୁଛି । ମାନ୍ୟବର ରାଜ୍ୟପାଳ ଥରେ ଭାଷଣ ପ୍ରସଙ୍ଗରେ ଏକଥା ଉଲ୍ଲେଖ କରି କହିଥିଲେ ଯେ ଦାରିଦ୍ର୍ୟ ସତ୍ତ୍ୱେ ଓଡ଼ିଶାର ଲୋକେ ପୂଜାପର୍ବରେ ହର୍ଷଉଲ୍ଲାସରେ ଖୁସୀ ଥାଆନ୍ତି । ଏହା ଏକ ସୁଗୁଣ କିମ୍ବା ବିଡ଼ମ୍ବନା ସେ ସମ୍ପର୍କରେ ପ୍ରଶ୍ନ କରାଯାଇପାରେ । ଓଡ଼ିଶାର ସଂସ୍କୃତି କହିଲେ କେବଳ

ଓଡ଼ିଶୀ ନୃତ୍ୟ ନୁହେଁ । ଓଡ଼ିଶାର ବିଭବଶାଳୀ ଐତିହ୍ୟ, ବିଭିନ୍ନ କୀର୍ତ୍ତିରାଜି, ମନ୍ଦିର, ମଠ, ବଣଜଙ୍ଗଲ, ବିରଳ ପଶୁପକ୍ଷୀ, ହ୍ରଦ, ନଦୀ, ହସ୍ତଶିଳ୍ପ ଏବଂ ଖାଦ୍ୟ ଏବଂ ସଂଗୀତ ଏହାର ଅନ୍ତର୍ଭୁକ୍ତ । ଏଗୁଡ଼ିକର ସଂରକ୍ଷଣ ପାଇଁ କିଛି ଉଦ୍ୟମ ହେଉଛି କି ? ଜନସାଧାରଣ ଏ ବିଷୟରେ ସଚେତନ କି ? ଏ ଦିଗ ପ୍ରତି ଧ୍ୟାନ ନ ଦେଲେ ସେଗୁଡ଼ିକ କ୍ରମେ ଲୁପ୍ତ ହୋଇଯିବାର ସମ୍ଭାବନା ଅଧିକ । ଏଥିପାଇଁ ରାଜନୀତିଜ୍ଞ, ଅମଲାତନ୍ତ୍ର ଓ ଜନସାଧାରଣଙ୍କର ସହଯୋଗ ଦରକାର । ଐତିହ୍ୟ ଥରେ ଲୁପ୍ତ ହୋଇଗଲେ ତା'ର ପୁନରୁଦ୍ଧାର ଅସମ୍ଭବ । ଏ ସବୁ ପାଇଁ ଆବଶ୍ୟକ ସ୍ୱାଭିମାନ ସହିତ ଶୃଙ୍ଖଳା ଏବଂ ଶାରୀରିକ ଶ୍ରମ ।

ଗୋଟିଏ ସବ୍‌ମ୍ୟାରିନ୍ (ବୁଡ଼ାଜାହାଜ) ହସ୍ତାନ୍ତରୀକରଣ ଉତ୍ସବରେ ଯୋଗଦାନ କରିବା ପାଇଁ ପ୍ରଫେସର ନୁରୁଲ ହାସାନ୍ ରାଷ୍ଟ୍ରଦୂତ ଭାବେ ଏବଂ କନସଲ ଜେନେରାଲ ହିସାବରେ ମୁଁ କୃଷ୍ଣସାଗରର ସେବାସ୍ତପୋଲ ସହରକୁ ଯାଇଥିଲୁ । ରୁଷିଆ ନୌବାହିନୀର ଏହା ହେଉଛି ଅନ୍ୟତମ ପ୍ରଧାନ ବନ୍ଦର । ଏଭଳିକି ସୁରକ୍ଷା ଦୃଷ୍ଟିରୁ ରୁଷ ନାଗରିକଙ୍କ ପାଇଁ ସେ ସହରଟି ମଧ୍ୟ ଉନ୍ମୁକ୍ତ ନଥିଲା । ଆମେ ଯେତେବେଳେ ନୌବାହିନୀର ପ୍ରଧାନ କାର୍ଯ୍ୟାଳୟ ଏବଂ ବନ୍ଦର ଭିତରକୁ ପଶିଲୁ ସେତେବେଳେ ସମସ୍ତଙ୍କର ପରିଚୟ ପତ୍ର ସମୀକ୍ଷା ନିରୀକ୍ଷା କରାଗଲା ଏବଂ ସେଥିରୁ ନୌବାହିନୀର ମୁଖ୍ୟ ଏବଂ ସେବାସ୍ତପୋଲ ଅଞ୍ଚଳର ମୁଖ୍ୟ ଅଧିକାରୀ ମଧ୍ୟ ବାଦ ପଡ଼ିଲେ ନାହିଁ । ସେମାନଙ୍କୁ ସମସ୍ତେ ସେ ଅଞ୍ଚଳରେ ଜାଣନ୍ତି, କିନ୍ତୁ ସମସ୍ତେ ଗୋଟିଏ ଶୃଙ୍ଖଳାର ନିୟମରେ ପରିଚାଳିତ । ଆମ ପ୍ରଦେଶରେ ଏ କଥା କଳ୍ପନା କରି ହୁଏନା । ସୁରକ୍ଷା ଦୃଷ୍ଟିରୁ ଆମ ଲୋକ ପ୍ରତିନିଧିଙ୍କୁ ଯଦି ପରିଚୟପତ୍ର ମଗାଯାଏ ତେବେ ସେ ତାହାକୁ ନିଜପ୍ରତି ଅପମାନ ବୋଲି ବିବେଚନା କରିବେ । ଏଇଠି ହେଉଛି ତଫାତ୍ । ରୁଷିଆ ଏକଦା ମହାଶକ୍ତି ଥିଲା । ଅଥଚ ଆମେ ସ୍ୱାଧୀନତାର ଷାଠିଏ ବର୍ଷ ପରେ ମଧ୍ୟ ଗୋଟିଏ ବିକଶିତ ଦେଶରୂପେ ନିଜକୁ ପ୍ରତିଷ୍ଠିତ କରିପାରି ନାହୁଁ । ଏ ସବୁ ଛୋଟ ଘଟଣା ସମ୍ପର୍କରେ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଲା ଯେ ଆମେ ବର୍ତ୍ତମାନର ବିବର୍ତ୍ତନଶୀଳ ଯୁଗରେ ନିଜକୁ ପ୍ରତିଷ୍ଠିତ କରିବାକୁ ହେଲେ ଶୃଙ୍ଖଳା, ପରିଶ୍ରମ ଏବଂ ସ୍ୱାଭିମାନକୁ ମୂଳମନ୍ତ୍ର ହିସାବରେ ଗ୍ରହଣ କରିବାକୁ ପଡ଼ିବ । ନଚେତ୍ ଆମର ଅସ୍ମିତା ଲୋପ ପାଇବାର ସମ୍ଭାବନା ବେଶୀ । ଗୋଟିଏ ପ୍ରଗତିଶୀଳ, ସମାଜ ଗଠନରେ ଶୃଙ୍ଖଳା, ଓ ସଚ୍ଚୋଟ ପଣିଆ ସହିତ ଶାଳୀନତା ଯେ ପ୍ରୟୋଜନ ତାହା ଜାପାନ ଓ ରୁଷିଆ ପ୍ରଭୃତି ଉନ୍ନତ ଦେଶମାନଙ୍କୁ ଅନୁଧ୍ୟାନ କରି ଶିଖିବା ଉଚିତ୍ । ଆମ ସମାଜରେ ବର୍ତ୍ତମାନ ରେନାଁସା ବା ନବଜାଗରଣର ପ୍ରୟୋଜନ ରହିଛି । ଏହି ନବ ଜାଗରଣ ପାଇଁ ସମାଜରୁ ନେବା ଅପେକ୍ଷା ଦେବାର ସମୟ ଆସିଛି ।

***

# ପରିବର୍ତ୍ତନର ନିର୍ଣ୍ଣାୟକ ମୁହୂର୍ତ୍ତ

ଭାରତବର୍ଷର ଗ୍ରାମୀଣ ଏବଂ ସହରୀ ଜୀବନରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ବର୍ତ୍ତମାନ ଦୃଶ୍ୟମାନ ସେ ସବୁ ସମ୍ଭବପର ହୋଇଛି ଟେକ୍ନୋଲଜିଭିତ୍ତିକ ଜ୍ଞାନ ଏବଂ ଜଗତୀକରଣ ହେତୁ । କେତେକ କହିବାକୁ ଲାଗିଲେଣି ଯେ ପୃଥିବୀ ଆଉ ଗୋଲ ନୁହେଁ, ଏହା ବର୍ତ୍ତମାନ ସମତଳ । ଅନ୍ୟ ଅର୍ଥରେ ରାଷ୍ଟ୍ରଗୁଡ଼ିକର ଭୌଗୋଳିକ ସୀମାରେଖାର ଯଥାର୍ଥତା ଆଉ ନାହିଁ ।

ଜଗତୀକରଣର ଧାରଣା ବା ଚିନ୍ତାକଳ୍ପ କିଛି ନୂଆ କଥା ନୁହେଁ । କଲମ୍ବସଙ୍କ ସମୟରୁ ୧୮୦୦ ଶତାବ୍ଦୀ ପର୍ଯ୍ୟନ୍ତ ଜଗତୀକରଣର ପ୍ରଥମ ପରୀକ୍ଷା ଓ ପର୍ଯ୍ୟାୟ ଥିଲା ଦେଶ ଦେଶ ମଧ୍ୟରେ କ୍ଷମତା ଏବଂ ଶକ୍ତି ପ୍ରଦର୍ଶନର । ପ୍ରତିଦ୍ୱନ୍ଦିତା ଥିଲା ସେତେବେଳେ ଜଗତୀକରଣର ରୂପରେଖ । ଧର୍ମ ଓ ସାମ୍ରାଜ୍ୟବାଦ ମାଧ୍ୟମରେ ପୃଥିବୀର ସମୀକରଣ ବା ଏକୀଭୂତ କରିବା ପାଇଁ ତାହା ଥିଲା ଏକ ପ୍ରୟାସ ।

ଜଗତୀକରଣର ଦ୍ୱିତୀୟ ପର୍ଯ୍ୟାୟ ମୋଟାମୋଟି ଭାବେ ଥିଲା ୧୮୦୦ - ୨୦୦୦ ମସିହା ପର୍ଯ୍ୟନ୍ତ । ସେ ପର୍ଯ୍ୟାୟର ପରିବର୍ତ୍ତନର ପ୍ରତିନିଧି ହେଲେ ବହୁରାଷ୍ଟ୍ରୀୟ କମ୍ପାନୀ । ୟୁରୋପୀୟ, ବିଶେଷ କରି ବ୍ରିଟିଶ, ଡ଼ଚ୍, ଫରାସୀ କମ୍ପାନୀଗୁଡ଼ିକ ନୂତନ ମାର୍କେଟ ଓ ଶସ୍ତା ଶ୍ରମିକଙ୍କ ସନ୍ଧାନରେ ଶକ୍ତି ପ୍ରୟୋଗ ତଥା କୂଟନୀତି ସାହାଯ୍ୟରେ ପୃଥିବୀର ଅନ୍ୟ ଅଞ୍ଚଳରେ ନିଜର ଆଧିପତ୍ୟ ବିସ୍ତାର କରିବାରେ ସଫଳ ହୋଇଥିଲେ । ଷ୍ଟିମ ଇଞ୍ଜିନ, ରେଲ ଓ ପରବର୍ତ୍ତୀ ଯୁଗରେ ଟେଲିଗ୍ରାଫ, ଟେଲିଫୋନ, ପିସି ସାଟେଲାଇଟ୍, ଜଗତୀକରଣରେ ସହାୟକ ହେଲେ । ଗୋଟିଏ ଦୃଷ୍ଟିରୁ ବୃହତ୍ ପୃଥିବୀ ଗୋଟିଏ ଗ୍ରାମରେ ପରିଣତ ହେଲା । ସେ ସମୟରେ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର ପ୍ରମୁଖ ଚାଲେଞ୍ଜ ଥିଲା - ଜଗତୀକରଣରେ କିଭଳି ସାମିଲ୍ ହେବା ଓ ସୁଯୋଗର ଫାଇଦା ଉଠାଇବା ।

କିନ୍ତୁ ଏକବିଂଶ ଶତାବ୍ଦୀର ପ୍ରାରମ୍ଭରୁ ବ୍ୟକ୍ତିର ନୂତନ ଅର୍ଜିତ ଜ୍ଞାନ ସାହାଯ୍ୟରେ ପୃଥିବୀ ବ୍ୟାପୀ ପ୍ରତିଦ୍ୱନ୍ଦିତା ଓ ସହଯୋଗରେ କ୍ଷମତା ଆଶାତୀତ ଭାବେ ବୃଦ୍ଧି ପାଇଛି । ପ୍ରତ୍ୟେକ ବିଷୟରେ ମୌଳିକ ଗବେଷଣା, ବ୍ୟାବହାରିକ, ପ୍ରୟୋଗାତ୍ମକ ପରୀକ୍ଷା, ନିର୍ମାଣ ପ୍ରକ୍ରିୟା, ଉତ୍କର୍ଷ ସାଧନ ଇତ୍ୟାଦି ବ୍ୟକ୍ତିର ଉଦ୍ୟମରେ ବର୍ତ୍ତମାନ ସମ୍ଭବ ।

ଜଗତୀକରଣର ପ୍ରଥମ ଓ ଦ୍ୱିତୀୟ ପର୍ଯ୍ୟାୟରେ ପ୍ରଧାନ ଭୂମିକା ଗ୍ରହଣ କରିଥିଲେ ଆମେରିକା ଓ ୟୁରୋପୀୟ ବ୍ୟକ୍ତି ଏବଂ କମ୍ପାନୀଗୁଡ଼ିକ; କିନ୍ତୁ ଜଗତୀକରଣର ତୃତୀୟ ପର୍ଯ୍ୟାୟରେ ବ୍ୟକ୍ତିପ୍ରାଧାନ୍ୟ ସ୍ୱୀକୃତ । ପୃଥିବୀର ଯେ କୌଣସି କୋଣରୁ ଯେ କୌଣସି ବ୍ୟକ୍ତି ବର୍ତ୍ତମାନ ପ୍ରତିଦ୍ୱନ୍ଦ୍ୱିତା ଓ ସହଯୋଗିତା ପାଇଁ କ୍ଷମତାସମ୍ପନ୍ନ । ନୂତନ ପ୍ରକ୍ରିୟା ଓ ଭାବନା ଜଗତୀକରଣର ଏକ ନୂତନ ଦିଗନ୍ତ ।

ଆମେମାନେ ଏକ ନୂତନ ଯୁଗରେ ପ୍ରବେଶ କରୁଛେ ଯେଉଁଠି ଡ଼ିଜିଟାଇସନ, ଅଟୋମେସନର କ୍ରମବର୍ଦ୍ଧିଷ୍ଣୁ ପ୍ରାଧାନ୍ୟ ଓ ଯଥାର୍ଥତା ଉପଲବ୍ଧ ହେବ । ଉତ୍ପାଦନ ସାମର୍ଥ୍ୟ ନିର୍ଭର କରିବ ନୂତନ ଟେକ୍ନୋଲଜି ଉପରେ । ଅଧିକରୁ ଅଧିକ ମଣିଷ ଟେକ୍ନୋଲଜି ସାନ୍ନିଧ୍ୟ ଲାଭ କରିବେ — ନବ ପ୍ରବର୍ତ୍ତକ ଏବଂ ସହାୟକ ହିସାବରେ ମଧ୍ୟ, ଏଭଳିକି ଆତଙ୍କବାଦୀ ହିସାବରେ । ଆତଙ୍କବାଦୀଙ୍କର କାର୍ଯ୍ୟକଳାପରେ ଟେକ୍ନୋଲଜିର କ୍ରମବର୍ଦ୍ଧିଷ୍ଣୁ ବ୍ୟବହାର ଓ ସଫଳତାକୁ ଅସ୍ୱୀକାର କରି ହେବ ନାହିଁ । ଅନ୍ୟ ଭାଷାରେ ଜଗତୀକରଣର ତୃତୀୟ ପର୍ଯ୍ୟାୟରେ ମାନସିକ, ସାମାଜିକ, ବ୍ୟବସାୟିକ, ରାଜନୈତିକ, ଆନ୍ତର୍ଜାତିକ ସମ୍ପର୍କ ଓ ବ୍ୟକ୍ତିର ଭୂମିକା ସମଗ୍ର ବିଶ୍ୱ ବ୍ୟବସ୍ଥାକୁ ଓଲଟପାଲଟ କରି ଏକ ନୂତନ ବ୍ୟବସ୍ଥା ଗଠନର ସମ୍ଭାବନା ସୃଷ୍ଟି କରିବ ଯେପରି ଶିଳ୍ପ ବିପ୍ଳବ, ରାଜନୈତିକ, ସାମାଜିକ, ଅର୍ଥନୈତିକ ବ୍ୟବସ୍ଥାରେ ଆସିଥିଲା । ତା'ଠାରୁ ପ୍ରଖର ହେବ ନୂତନ ପରିବର୍ତ୍ତନର ସ୍ରୋତ । ତାର ସମ୍ୟକ ସୂଚନା ସମାଜର ପ୍ରତି କ୍ଷେତ୍ରରେ ଦେଖିବାକୁ ମିଳିଲାଣି । ଯୁବପିଢ଼ି ଓ ବରିଷ୍ଠ ନାଗରିକଙ୍କ ଦୃଷ୍ଟିଭଙ୍ଗୀ, ଦକ୍ଷତା ତଥା ପ୍ରତିଯୋଗୀ ହେବାର ସାମର୍ଥ୍ୟରେ ବ୍ୟବଧାନ ପରିସ୍ଫୁଟ ।

ପୃଥିବୀକୁ ସମତଳ କରିବାରେ ଯେଉଁସବୁ ଐତିହାସିକ ଘଟଣା ସହାୟକ ହୋଇଥିଲେ ସେଗୁଡ଼ିକ ହେଲେ — ବର୍ଲିନ ୱାଲର ପତନ ଏବଂ ସୋଭିଏଟ୍ ୟୁନିୟନର ବିଲୟ । ପରିବର୍ତ୍ତରେ ଗଣତାନ୍ତ୍ରିକ ପଦ୍ଧତି, ସର୍ବସମ୍ମତ ନିଷ୍ପତ୍ତି, ଓ ମୁକ୍ତ ବାଣିଜ୍ୟ ନୀତି ବହୁ ରାଷ୍ଟ୍ର ଗ୍ରହଣ କରିବାକୁ ଲାଗିଲେ । ଏଥି ସହିତ ସାଧାରଣ ମାନ ପଦ୍ଧତିର ନୂତନ ପ୍ରକ୍ରିୟା ସୃଷ୍ଟି ହେଲା । ଦେଶର ଅର୍ଥନୀତି କିପରି ପରିଚାଳିତ ହେବ, ବ୍ୟାଙ୍କ,ଆକାଉଣ୍ଟିଂ ପଦ୍ଧତିର ରୂପରେଖ, ପିସି ଓ ଅନ୍ୟାନ୍ୟ ଖାଉଟି ଦ୍ରବ୍ୟର ଡ଼ିଜାଇନ, ବ୍ୟବସାୟିକ ଏବଂ ସୂଚନା ପ୍ରକ୍ରିୟାରେ ସାଧାରଣ ମାନଦଣ୍ଡର ନିର୍ଦ୍ଧାରଣ, ଐକୀକରଣ ଗତିର ବେଗ ବୃଦ୍ଧି ପାଇବାରେ ସାହାଯ୍ୟ କରୁଛି । ଖାଲି ସେତିକି ନୁହେଁ, ଦୈନନ୍ଦିନ ଜୀବନରେ ଆପଣ ଗୋଟିଏ କଲ୍ ସେଣ୍ଟର ଯାଆନ୍ତୁ ଦେଖିବେ - କମ୍ପ୍ୟୁଟରଗୁଡ଼ିକରେ ମାଇକ୍ରୋସଫ୍ଟ ୱିଣ୍ଡୋ, ଚିପ୍ସଗୁଡ଼ିକ ଇନ୍‌ଟେଲର, ଫୋନ ବିଏସ୍‌ଏନ୍‌ଏଲ୍, ରିଲାୟାନ୍ସ କିମ୍ବା ଟାଟାର, ଏୟାରକଣ୍ଡିସନ୍ ଏଲ୍‌ଜିର । ପାନୀୟ ଦ୍ରବ୍ୟ କୋକାକୋଲା, ପେପ୍‌ସୀ, ବିସଲେରୀ ବ୍ରାଣ୍ଡର । ଛୋଟ ସହରଗୁଡ଼ିକରେ ମଧ୍ୟ ଇଣ୍ଟରନ୍ୟାସନାଲ ବ୍ରାଣ୍ଡର ସାମଗ୍ରୀ ଉପଲବ୍ଧ । ତରୁଣ ତରୁଣୀମାନେ ରେବାନ୍ କଳା ଚଷମା, ରିବୋକ୍ ଜୋତା ଇତ୍ୟାଦି

ପିନ୍ଧୁଛନ୍ତି । ଶୁଣୁଛନ୍ତି ପାଶ୍ଚାତ୍ୟ ସଙ୍ଗୀତ । ମୋବାଇଲ ଫୋନରେ ନ୍ୟୁୟର୍କ ଓ ଭୁବନେଶ୍ୱରରେ କିଛି ଫରକ ନାହିଁ । ହଲିଉଡ୍ ସିନେମା ଓ ବଲିଉଡ୍‌ର ପ୍ରଭାବ ସ୍ଥାନୀୟ ଯାତ୍ରା, ତାମସା ଉପରେ ଦୃଶ୍ୟମାନ । ଏସବୁ ସାଧାରଣ ମାନ ପଦ୍ଧତିର ଅନ୍ୟ ଗୋଟିଏ ଦିଗ ।

ନବେ ଦଶକର ଶେଷାର୍ଦ୍ଧରେ ୱେବସାଇଟ ସାହାଯ୍ୟରେ କନେକ୍‌ଟିଭିଟି ସଂଯୋଜନାରେ ଅତି କମ୍ ଖର୍ଚ୍ଚରେ, କ୍ଷିପ୍ର ଗତିରେ ଡ଼ିଜିଟାଲ ବିଷୟବସ୍ତୁର ଆଦାନ ପ୍ରଦାନ ପୃଥକ ପରିବର୍ତ୍ତେ ପରସ୍ପର ନିର୍ଭରଶୀଳତାର ନୂତନ ଦୃଷ୍ଟିଭଙ୍ଗୀର ଆଭାସ ମିଳୁଛି । ୱିଣ୍ଡୋର ଆବିର୍ଭାବ,ପିସିର ଲୋକପ୍ରିୟତା ବ୍ୟକ୍ତିତ୍ୱର ବିକାଶ ପାଇଁ ଅଭୂତପୂର୍ବ କ୍ଷମତା ପ୍ରଦାନ କରିଛି, ବିଶ୍ୱବ୍ୟାପୀ ଭିତ୍ତିଭୂମି ସୃଷ୍ଟି କରିବାରେ ସାହାଯ୍ୟ କରିଛି । ଏହି ପ୍ଲାଟଫର୍ମରେ ସବୁ ପ୍ରକାରର ଲୋକେ ଏସିଆ, ଆଫ୍ରିକାର ହୁଅନ୍ତୁ କିମ୍ବା ଲାଟିନ୍ ଆମେରିକାର ହୁଅନ୍ତୁ, କମ୍ପ୍ୟୁଟର ସାହାଯ୍ୟରେ ଯୋଗାଯୋଗ ସହ ଜ୍ଞାନର ଆଦାନ ପ୍ରଦାନ, ନୂତନ ଆବିଷ୍କାର, ନୂଆ କମ୍ପାନୀ ଗଠନ, ବସ୍ତୁ ଓ ସେବାର ଉତ୍ପାଦନ, ଆମଦାନୀ, ରପ୍ତାନୀ ସମ୍ଭବ କରିପାରୁଛନ୍ତି । ପୃଥିବୀର ସମତଳ ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାରେ ସାହାଯ୍ୟ କରିଛନ୍ତି - ଆଉଟ ସୋର୍ସିଂ ଓ ଅଫ୍‌ସୋରିଙ୍ଗ । ଆଉଟସୋର୍ସିଂ ଏବଂ ଅଫ୍‌ସୋରିଙ୍ଗ ପାରମ୍ପରିକ ଢ଼ାଞ୍ଚାର ଯଥାର୍ଥତାକୁ ଚାଲେଞ୍ଜ କରିଛି ।

ଭାରତବର୍ଷର ଆଉଟସୋର୍ସିଂରେ ଆଧିପତ୍ୟ ଏବଂ ଏକବିଂଶ ଶତାବ୍ଦୀରେ ମହାଶକ୍ତି ଭାବେ ଉଦୟର ସମ୍ଭାବନାର ସୂତ୍ରପାତ ୨୦୦୦ ମସିହାର ୱାଇ ଟୁ କେ(Y2K) ସମସ୍ୟା ସମୟରେ ଆରମ୍ଭ । ସେତେବେଳେ ଭାରତୀୟ କମ୍ପାନୀଗୁଡ଼ିକ ଦ୍ୱାରା ଫାଇବର ଅପଟିକ୍ସର ବଳକା କ୍ଷମତାକୁ ଉପଯୋଗ କରିବା ସମ୍ଭବ ହେଲା ଇଂରାଜୀ ଭାଷାରେ ଦକ୍ଷତା ଥିବା କୁଶଳୀ,ଶିକ୍ଷିତ ଓ ପରିଶ୍ରମୀ ଭାରତୀୟ ଇଞ୍ଜିନିୟର ଏବଂ ବୈଜ୍ଞାନିକମାନଙ୍କ ଅବଦାନ ପାଇଁ । ନେହେରୁ ଓ ସ୍ୱାଧୀନତା ପରବର୍ତ୍ତୀ ନେତୃତ୍ୱର ଦୂରଦୃଷ୍ଟିତା ତଥା ନିଷ୍ପତ୍ତି ଯୋଗୁଁ ଆଇଆଇଟି ଏବଂ ଆଇଆଇଏମ୍‌ରୁ ଶିକ୍ଷାପ୍ରାପ୍ତ ବହୁସଂଖ୍ୟକ କୁଶଳୀ ଇଞ୍ଜିନିୟର, ବୈଜ୍ଞାନିକ ଓ ପ୍ରତିଭାବାନ ବ୍ୟକ୍ତି ସେଭଳି ଏକ ପରିବର୍ତ୍ତନର ନିର୍ଣ୍ଣାୟକ ମୁହୂର୍ତ୍ତରେ ଯୋଗଦାନ ଦେଲେ । ବର୍ତ୍ତମାନ ପରିସ୍ଥିତି କିନ୍ତୁ ଅଲଗା । ସେଇ ପ୍ରତିଭାବାନ ବ୍ୟକ୍ତିମାନଙ୍କୁ ଭାରତ ଛାଡ଼ି ଆମେରିକା କିମ୍ବା ୟୁରୋପ ଯିବାର ପ୍ରୟୋଜନ ନାହିଁ । ଭାରତୀୟ ପରିବେଶରେ ପ୍ଲଗ ଇନ୍ (Plug in) କରି ସାରା ପୃଥିବୀରେ ପହଞ୍ଚିବାର ସୁଯୋଗ ଦିନକୁ ଦିନ ବୃଦ୍ଧି ପାଉଛି । ବିକଶିତ ଦେଶର ୧/୫ ଖର୍ଚ୍ଚରେ ଗୁଣାତ୍ମକମାନଯୁକ୍ତ, ଉତ୍କର୍ଷ କାର୍ଯ୍ୟ ଭାରତରେ ହୋଇପାରୁଛି ।

କମ୍ ସମୟରେ, କମ ଖର୍ଚ୍ଚରେ କାର୍ଯ୍ୟ ସମାପନ ହିଁ ସବୁ ଅର୍ଥନୈତିକ କାର୍ଯ୍ୟକଳାପର ଲକ୍ଷ୍ୟ । ଏ ପରିସ୍ଥିତିରେ କୁଶଳୀ ଭାରତୀୟଙ୍କ ସୁଯୋଗ ନେବା ସ୍ୱାଭାବିକ; କିନ୍ତୁ ଏ ସୁଯୋଗ ଚିରସ୍ଥାୟୀ ନୁହେଁ । ପୂର୍ବ ୟୁରୋପର ହଙ୍ଗେରୀ, ଚେକ୍ କିମ୍ବା ଚୀନ ଓ ଭିଏତନାମ ପ୍ରଭୃତି ଦେଶରୁ ପ୍ରତିଦ୍ୱନ୍ଦ୍ୱିତାର ଇଙ୍ଗିତ ମିଳିଲାଣି ।

୨୦୦୧ ମସିହାରେ ଚୀନର ବିଶ୍ୱ ବାଣିଜ୍ୟ ସଙ୍ଗଠନରେ (WTO) ଯୋଗଦାନ ଏକ ଐତିହାସିକ ଘଟଣା । ଏହା ଦ୍ୱାରା ଚୀନ ବିଶ୍ୱରେ ପ୍ରଚଳିତ, ଆଦୃତ ଦ୍ରବ୍ୟ, ସେବା,ଆମଦାନୀ, ରପ୍ତାନି ନିୟମ ବିଧିକୁ ଗ୍ରହଣ କଲା । ଚୀନର ଏତାଦୃଶ ନୀତି ବିଦେଶୀ କମ୍ପାନୀଗୁଡ଼ିକୁ ଆଶ୍ୱାସନା ଓ ନିର୍ଭର ପ୍ରତିଶ୍ରୁତି ଦେଲା ଯେ ଯଦି ସେମାନେ ତାଙ୍କର ଫ୍ୟାକ୍ଟ୍ରି ଗୁଡ଼ିକୁ ଚୀନକୁ ସ୍ଥାନାନ୍ତର କରନ୍ତି, ତେବେ ସେମାନଙ୍କର ସ୍ୱାର୍ଥ ଆନ୍ତର୍ଜାତିକ ଆଇନ ଓ ସାଧାରଣ ବ୍ୟବସାୟିକ ବିଧି ଦ୍ୱାରା ସୁରକ୍ଷିତ ରହିବ । ଫଳରେ ବହୁ ବିଦେଶୀ କମ୍ପାନୀ ଚୀନରେ ଆସ୍ଥା ଜମେଇଲେଣି । ଫୋରବ୍ସ ପତ୍ରିକାର ୫୦୦ କମ୍ପାନୀରୁ ୪୦୦ କମ୍ପାନୀ ଚୀନର ୨୦୦୦ ପ୍ରକଳ୍ପରେ ପୁଞ୍ଜି ନିବେଶ କରିଛନ୍ତି । ୧୦୦ କୋଟିରୁ ଊର୍ଦ୍ଧ୍ୱ ଲୋକଙ୍କର ମାର୍କେଟ ଓ ଚାହିଦା ବ୍ୟବସାୟ ଦୃଷ୍ଟିରୁ ଆକର୍ଷଣୀୟ ଓ ଲୋଭନୀୟ । ଚୀନରେ ୧୦ ଲକ୍ଷରୁ ଊର୍ଦ୍ଧ୍ୱ ବ୍ୟକ୍ତି ବସବାସ କରୁଥିବା ସହରଗୁଡ଼ିକର ସଂଖ୍ୟା ଏବେ ୧୬୦ । ଏସବୁ ଅଜଣା ସହର ବର୍ତ୍ତମାନ ଶିଳ୍ପ କ୍ଷେତ୍ରରେ ସକ୍ରିୟ । ରୋଜଗାର, ବୃତ୍ତି, ଧନ୍ଦାରେ ସମସ୍ତେ ମସଗୁଲ୍ । ଚୀନର ପୂର୍ବତଟବର୍ତ୍ତୀ ଏଭଳି ବହୁ ସହରରେ ସମଗ୍ର ବିଶ୍ୱବଜାର ପାଇଁ ବିଭିନ୍ନ ଖାଉଟି ଦ୍ରବ୍ୟ ଉତ୍ପାଦନ କରାଯାଉଛି । ଚୀନର ପ୍ରଦେଶଗୁଡ଼ିକ ମଧ୍ୟରେ ଚାଲିଛି ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଅଭିନବ ନୀତି ଓ ରିହାତି ମାଧ୍ୟମରେ ଶିଳ୍ପପତି, କମ୍ପାନୀଗୁଡ଼ିକୁ ଆକୃଷ୍ଟ କରିବା ପାଇଁ । ଚୀନର ଅଫ୍‌ସୋରିଙ୍ଗ ନୀତି ଅନ୍ୟ ପ୍ରତିଦ୍ୱନ୍ଦ୍ୱୀ ମାଲେସିଆ, ଥାଇଲାଣ୍ଡ, ବ୍ରାଜିଲ, ମେକ୍ସିକୋ, ଭିଏତନାମ ଦେଶଗୁଡ଼ିକୁ ମଧ୍ୟ କରୁଛି ପ୍ରୋତ୍ସାହନ ରିହାତି ଦେବା ପାଇଁ । ଚୀନର ନୀତି ନିର୍ଦ୍ଧାରକମାନେ କୃଷି, ଶିଳ୍ପ, ଶିକ୍ଷା ଓ ସ୍ୱାସ୍ଥ୍ୟ, ପର୍ଯ୍ୟଟନ କ୍ଷେତ୍ରକୁ ପୂର୍ଣ୍ଣମାତ୍ରାରେ ପ୍ରୋତ୍ସାହନ ଦେଉଛନ୍ତି । ଭାରତରେ ଏଗୁଡ଼ିକ ତୁଳନାରେ ସେବା କ୍ଷେତ୍ରକୁ ଅଧିକ ପ୍ରାଧାନ୍ୟ ଦିଆଯାଉଛି । ଏକ ବିରାଟ ଜନବହୁଳ, ପ୍ରାଚୀନ, ପରମ୍ପରାଗତ ଦେଶରେ କୃଷି ଓ ଶିଳ୍ପକୁ ଅବହେଳା କରାଯାଇନପାରେ । ତାର କୁଫଳ ଭବିଷ୍ୟତରେ ଭୋଗ କରିବାକୁ ପଡ଼ିବ ।

ଆଉଟ୍‌ସୋର୍ସିଂ ଏବଂ ଅଫ୍‌ସୋରିଂ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଲା ଯେ ଏହା ବହୁ ଦେଶ ଓ ସମାଜକୁ ଏକ ସୁଯୋଗ ଦେଉଛି ନିଜର ଅର୍ଥନୈତିକ ଅବସ୍ଥାକୁ ସୁଧାରିବା ପାଇଁ,ଦେଶର ଜିଡ଼ିପି ବୃଦ୍ଧି କରିବା ପାଇଁ ତଥା ଜୀବନଧାରଣର ମାନ ବୃଦ୍ଧି ପାଇଁ । ଏହି ପରିପ୍ରେକ୍ଷୀରେ ଆମ ସମସ୍ତଙ୍କର ଆତ୍ମସମୀକ୍ଷା କରିବାର ସମୟ ଆସିଛି । ଜଗତୀକରଣରେ ଆମେ କିଭଳି ସାମିଲ ହୋଇପାରିବା ଏବଂ ସୁଯୋଗର ଲାଭ ଉଠାଇ ବ୍ୟକ୍ତି ଓ ପ୍ରଦେଶର ଉନ୍ନତି କରିବା । ପରିବେଶର ସୁରକ୍ଷା ଏବଂ ପ୍ରଦେଶର ସ୍ୱାର୍ଥକୁ ଧ୍ୟାନ ଦେଇ କାର୍ଯ୍ୟକ୍ରମର ରଣକୌଶଳ ପ୍ରସ୍ତୁତ କରିବା ସରକାର, ଜନସାଧାରଣ, ରାଜନୈତିକ ଦଳ, ସମାଜର ନେତୃବୃନ୍ଦଙ୍କ ବର୍ତ୍ତମାନ ଦାୟିତ୍ୱ ।

ଗଚ୍ଛିତ ଖଣିଜ ସମ୍ପଦରେ ଓଡ଼ିଶା ଗୋଟିଏ ଅଗ୍ରଣୀ ପ୍ରଦେଶ । ଜାତୀୟ ଜଳ ସମ୍ପଦର ୧୫ ପ୍ରତିଶତ ଆମ ପ୍ରଦେଶରେ । କୃଷି ଓ ଶିଳ୍ପ ବିକାଶ ପାଇଁ ଆମ ପ୍ରଦେଶରେ ଯେଉଁ

ସୁଯୋଗ ରହିଛି ତାହା ଅନ୍ୟ ପ୍ରଦେଶରେ ନାହିଁ କହିଲେ ଚଳେ । ଏହା ବ୍ୟତୀତ ୪୮୦ କିଲୋମିଟର ବେଳାଭୂମି ଆମର ରହିଛି । ଭିତ୍ତିଭୂମିର ବିକାଶ କରି ଆଧୁନିକ ବନ୍ଦର ନିର୍ମାଣ କରାଗଲେ ପର୍ଯ୍ୟଟନ, ଆମଦାନୀ ଓ ରପ୍ତାନୀର ବିକାଶ ପାଇଁ ଓଡ଼ିଶାରେ ବିଶେଷ ସୁଯୋଗ ସୃଷ୍ଟି କରାଯାଇପାରିବ ।ଏ ସବୁ ସତ୍ତ୍ୱେ ଆମ ପ୍ରଦେଶ ଦେଶର ସବୁଠାରୁ ଦରିଦ୍ରତମ ପ୍ରଦେଶ । ଶିଶୁ ମୃତ୍ୟୁହାର ଏଠାରେ ସର୍ବାଧିକ । ନିରକ୍ଷରଙ୍କ ସଂଖ୍ୟା ମଧ୍ୟ ଅନ୍ୟ ପ୍ରଦେଶ ତୁଳନାରେ ଅଧିକ । ବିଡ଼ମ୍ବନା ଯେ ଜାତୀୟ ସ୍ତରର ଜନପ୍ରିୟ ପତ୍ରିକାର ଜନମତ ସର୍ଭେରେ ଆମର ମୁଖ୍ୟମନ୍ତ୍ରୀ ନମ୍ବର ଓ୍ୱାନ; କିନ୍ତୁ ଅର୍ଥନୈତିକ ପ୍ରଗତି ଓ ମାନବିକ ମାପକାଠିରେ ଓଡ଼ିଶା ଦୁଇ ତିନିଟି ପଛୁଆ ରାଜ୍ୟ ମଧ୍ୟରେ ଅନ୍ୟତମ । ଏହା କିଭଳି ସମ୍ଭବ ହେଉଛି ? ଏ ସବୁ ଚରମ ଦାରିଦ୍ର୍ୟ ଓ ମୂଲ୍ୟବୋଧ ଅବକ୍ଷୟର ପରିଣାମ । ଏ ଅଭିଶାପରୁ ମୁକ୍ତ ପାଇବାକୁ ହେଲେ ଶୃଙ୍ଖଳା, ସ୍ୱାଭିମାନ ଓ କଠିନ ପରିଶ୍ରମ, ସଚେତନତାର ପ୍ରୟୋଜନ ରହିଛି । ସାଂପ୍ରତିକ ଜଗତୀକରଣ ଓ ଟେକ୍ନୋଲଜି ବିପ୍ଳବ ଇତିହାସରେ ପରିବର୍ତ୍ତନର ଏକ ନିର୍ଣ୍ଣାୟକ ମୁହୂର୍ତ୍ତ । ଏଥିପ୍ରତି ସଜାଗ ନ ରହିଲେ, ନିଜର ଆଭିମୁଖ୍ୟ ନ ବଦଳାଇଲେ ଆଞ୍ଚଳିକ ବୈଷମ୍ୟରେ ଆମେ ଆହୁରି ପଛୁଆ ରାଜ୍ୟ ହୋଇଯିବା, ପ୍ରଗତିର ସ୍ରୋତର ମୂକସାକ୍ଷୀ ହୋଇ ରହିଯିବା ।

ଶେଷ କରିବି ଗୋଟିଏ ଆଫ୍ରିକୀୟ ଲୋକପ୍ରସିଦ୍ଧ ପ୍ରବାଦ ବା ଢ଼ଗ ସହ ଯାହାର ସାରାଂଶ ହେଲା — ଆଫ୍ରିକାରେ ପ୍ରତ୍ୟେକ ଦିନ ସୂର୍ଯ୍ୟୋଦୟ ବେଳେ କୃଷ୍ଣସାର ମୃଗ ଆଖି ଖୋଲେ ଓ ସେଇ ମୁହୂର୍ତ୍ତରେ ସଚେତନ ହୁଏ ଯେ ତାକୁ ସିଂହଠାରୁ କ୍ଷିପ୍ର ଗତିରେ ଦଉଡ଼ିବାକୁ ପଡ଼ିବ ନଚେତ୍ ମୃତ୍ୟୁ ସୁନିଶ୍ଚିତ । ପ୍ରତ୍ୟେକ ସକାଳେ ଆଫ୍ରିକାର ସିଂହ ଆଖି ଖୋଲେ ଓ ସେଇ ମୁହୂର୍ତ୍ତରେ ସଚେତନ ହୁଏ ଯେ ତାକୁ ସବୁଠାରୁ ମନ୍ଥରତମ କୃଷ୍ଣସାର ମୃଗଠାରୁ ଅଧିକ ବେଗରେ ଦଉଡ଼ିବାକୁ ପଡ଼ିବ ; ନଚେତ୍ କ୍ଷୁଧାଜନିତ ମୃତ୍ୟୁ ନିଶ୍ଚିତ । ତେଣୁ କୃଷ୍ଣସାର ମୃଗ ହେଉ ବା ସିଂହ — ସୂର୍ଯ୍ୟୋଦୟରେ ସମସ୍ତଙ୍କୁ ଦଉଡ଼ିବାକୁ ପଡ଼ିବ । ବେଗ ହିଁ ପ୍ରଗତିର ନିର୍ଣ୍ଣାୟକ ।



★ ଲେଖାଟି ପ୍ରସିଦ୍ଧ ସାମ୍ବାଦିକ ଫ୍ରିଡ୍‌ମ୍ୟାନଙ୍କ ପୁସ୍ତକ 'ଦି ୱାର୍ଲ୍ଡ ଇଜ୍ ଫ୍ଲାଟ' ଉପରେ ଆଧାରିତ ।

# ତଫାତ୍ କେଉଁଠି ?

ମତେ ଯଦି କେହି ପଚାରେ ଗୋଟିଏ ବିକଶିତ ଦେଶ ମାନେ କ'ଣ ? କିମ୍ବା ବିକାଶଶୀଳ ଦେଶ ଓ ଅନୁନ୍ନତ ଦେଶ ଭିତରେ ପ୍ରଭେଦର ଅସଲ କାରଣ କ'ଣ ? ନିଃସନ୍ଦେହରେ ତାର ଉତ୍ତର ହେବ - ଦୃଢ଼ ଚରିତ୍ର ଓ ଶୃଙ୍ଖଳାଜ୍ଞାନ । ଏହି ଦୁଇଟି ଚାରିତ୍ରିକ ଗୁଣ ଯୋଗୁ ଗୋଟିଏ ଜାତି ବା ଦେଶ ଅସମ୍ଭବକୁ ସମ୍ଭବ କରିପାରେ । ତିରିଶ ବର୍ଷ ପୂର୍ବେ ଜାପାନରେ ରହୁଥିବା ବେଳେ ମୁଁ ଏହା ହିଁ ହୃଦୟଙ୍ଗମ କରିଛି ।

ଜାପାନ ଏକ ଦ୍ୱୀପପୁଞ୍ଜ । ତାର ପ୍ରାୟ ଅଶୀ ଭାଗରୁ ବେଶି ପାହାଡ଼ିଆ ଅଞ୍ଚଳ । ପ୍ରାକୃତିକ ସଂପଦର ଘୋର ଅଭାବ ରହିଛି ସେ ଦେଶରେ । ଜଳବାୟୁ କୃଷି ପାଇଁ ଅନୁକୂଳ ନୁହେଁ । ଅଥଚ ସେଇ ଅଳ୍ପ ଜମିରେ ଜନବସତି, ଶିଳ୍ପ, କୃଷି ସେବା କ୍ଷେତ୍ରରେ ସେମାନଙ୍କର ଉତ୍କର୍ଷତା ଲକ୍ଷ୍ୟ କଲେ ବିସ୍ମିତ ହେବାକୁ ପଡ଼େ । ଜାପାନୀ ଘର ଓ ସ୍ଥାପତ୍ୟର ବିଶେଷତ୍ୱ ହେଲା ସ୍ୱଳ୍ପ ଜାଗାର ସଦୁପଯୋଗ ଏବଂ ମଣିଷ ଓ ପ୍ରକୃତିର ଅପୂର୍ବ ସମନ୍ୱୟ । ସେଇଭଳି ଶିଳ୍ପ କ୍ଷେତ୍ରରେ ଆଧୁନିକତା ଓ ନୂତନ ଉଦ୍‌ଭାବନର ବିନିଯୋଗ । ଶ୍ରମିକ ଶୃଙ୍ଖଳା ଏବଂ ଜାପାନୀମାନଙ୍କର ସ୍ୱାଭିମାନ ସେମାନଙ୍କ ତିଆରି ବିଭିନ୍ନ ଦ୍ରବ୍ୟକୁ ସମଗ୍ର ପୃଥିବୀରେ ପରିଚିତ କରାଇପାରିଛି । ଜାପାନରେ ତିଆରି କାର୍‌, ଟି.ଭି., ଫୋନ, ମ୍ୟୁଜିକ୍ ସେଟ୍ ଓ କ୍ୟାମେରା ପ୍ରଭୃତି ସମଗ୍ର ବିଶ୍ୱରେ ଗ୍ରାହକଙ୍କ ଦ୍ୱାରା ଆଦୃତ ହୋଇପାରିଛି । ଏହାର ପ୍ରଧାନ କାରଣ ହେଲା ଯେ ଜାପାନୀ ଜିନିଷ ଦେଖିବାକୁ ସୁନ୍ଦର, ଉପଯୋଗୀ ଏବଂ ରୁଚିପୂର୍ଣ୍ଣ । ମୁଁ ଜାପାନରେ ଥିବାବେଳେ କେବେ ହରତାଳ, ରାଲି କିମ୍ବା ବନ୍ଦ ଦେଖି ନାହିଁ । ସେଠିକାର ଶ୍ରମିକ ନିଜର ପ୍ରତିବାଦ ପ୍ରକାଶ କରେ ନୀରବରେ । ଗୋଟାଏ ବ୍ୟାଜ୍ ମୁଣ୍ଡରେ କିମ୍ବା ହାତରେ ପିନ୍ଧିଦେଲେ ଯଥେଷ୍ଟ ହେଲା । ପ୍ରତିବାଦ, କାର୍ଯ୍ୟ ବିରତି କିମ୍ବା ମଧ୍ୟାହ୍ନ ଖାଇବା ଛୁଟି ବେଳେ ଅନୁଷ୍ଠିତ ହୁଏ । କର୍ତ୍ତୃପକ୍ଷ ମଧ ସଚେତନ ଏବଂ ସମ୍ବେଦନଶୀଳ । କାରଖାନା କିମ୍ବା ବ୍ୟବସାୟ ଅନୁଷ୍ଠାନମାନେ ଶ୍ରମିକ ଶ୍ରେଣୀର ଦାବିର ଯଥାର୍ଥତା ଉପରେ ନିଜର ନିତି ବଦଳାନ୍ତି । ସମାଧାନ ପାଇଁ ନିଷ୍ପତ୍ତି ନିଅନ୍ତି । ଆମ ଦେଶରେ ତ ଭିନ୍ନ କଥା । ଦଂଗାଦୁଜା, ଘେରାଉ, ରେଳ ରୋକୋ, ରାସ୍ତା ରୋକୋ, ଚକା ବନ୍ଦ ନହେଲେ ସରକାରଙ୍କରଆଖି ଖୋଲେ ନାହିଁ । ଆନ୍ଦୋଳନକାରୀମାନଙ୍କର ମଧ ଜନସାଧାରଣଙ୍କ ସୁବିଧା ଅସୁବିଧା ପ୍ରତି କିଛି ଭ୍ରୁକ୍ଷେପ ନଥାଏ । ସାଧାରଣ ନାଗରିକ ତ ନୀରବରେ ସବୁ ସହିଯାଏ । ଏଇଠି ରହିଛି ଚାରିତ୍ରିକ ବୈଶିଷ୍ଟ୍ୟ କିମ୍ବା ଦୁର୍ବଳତା ।

ମୋର ମନେ ଅଛି ଜାପାନରେ ପ୍ରଥମ ଦିନ ଅଫିସରୁ ଯେତେବେଳେ ଗୋଟିଏ ପାର୍ଟିରୁ ମୁଁ ବିଳମ୍ବିତ ରାତିରେ ମେଟ୍ରୋରେ ଫେରି ଷ୍ଟେସନରେ ପହଂଚିଲି, ଆଲୋକର ଉଜ୍ଜ୍ୱଳତାରେ ବାଟ ବଣା ହୋଇଗଲି । ନିଜ ଘରର ଠିକ୍ ରାସ୍ତା ନଜାଣି ଦୁଃଖ ଓ ଆଶଙ୍କାରେ କିଂକର୍ତ୍ତବ୍ୟ ଅବସ୍ଥାରେ ଥିଲାବେଳେ, ଜଣେ ଜାପାନୀ ଖଣ୍ଡି ଖଣ୍ଡି ଇଂରାଜୀରେ ପଚାରିଲେ - ମୋର କ'ଣ ଅସୁବିଧା ହୋଇଛି କି ? ଯେତେବେଳେ ଜାଣିଲେ ଯେ ମୁଁ ଘରେ ପହଂଚିବାର ନିର୍ଦ୍ଦିଷ୍ଟ ରାସ୍ତାଟି ଜାଣିପାରୁ ନାହିଁ ସେ ନିଜେ ମୋ ସହିତ ଚାଲିବାକୁ ଆରମ୍ଭ କଲେ । ମୁଁ ଦେଇଥିବା ଠିକଣା ସହ ମୋ ୪ର୍ଥ ମହଲା ଘର ଦ୍ୱାର ପର୍ଯ୍ୟନ୍ତ ଆସି ପହଞ୍ଚାଇ ଦେଲେ । ସମୟ ସେତେବେଳେ ରାତି ଦେଢ଼ଟା । ରାସ୍ତା ନିର୍ଜନ । ତଥାପି ବହୁ ମହିଳା ନିରାପଦରେ, ନିର୍ଭୟରେ ଏକାକୀ କାମସାରି ଫେରୁଥାନ୍ତି । ମଧ୍ୟରାତ୍ରିର ନିରୋଳା ରାସ୍ତାରେ ଟ୍ରାଫିକ୍ ଲାଇଟ୍‌ରେ ସବୁ ଗାଡ଼ି ଲାଲିବତୀ ଜଳିଲେ ଅଟକିଯାଇ ଅପେକ୍ଷା କରୁଥାନ୍ତି ସବୁଜବତୀ ଜଳିବା ପାଇଁ । ଟୋକିଓର ମୁଖ୍ୟ ରାସ୍ତା କିମ୍ବା ଗଳିକନ୍ଦି ହେଉ ଦୋକାନୀ ରାତିରେ ନିଜର ଜିନିଷସବୁ ସ୍ଥାନାଭାବରୁ ବାହାରେ ଛାଡ଼ିଯାଏ । ଜିନିଷ ଉପରେ ଖାଲି ପକାଇ ଦିଏ ଚଦେରଟିଏ । ସାରା ରାତି ଜିନିଷ ସବୁ ସେମିତି ଥାଏ । ଚୋରୀ ହୁଏ ନାହିଁ । ଦୋକାନୀଟି ବିନା ଚିନ୍ତାରେ ତା ପରଦିନ ଦୋକାନ ଖୋଲି ଜିନିଷ ବିକ୍ରି କରେ ।

ଏହା କ'ଣ ଆମ ଦେଶରେ ସମ୍ଭବ ? ମଧ୍ୟରାତ୍ରିରେ ନାରୀମାନେ ନିର୍ଭୟରେ ସହରରେ ଫେରି ପାରିବେ ତ ? ଆଗନ୍ତୁକ କିମ୍ବା ଅତିଥିଙ୍କୁ ବିନା ଦ୍ୱିଧାରେ ତାର ଘର ପର୍ଯ୍ୟନ୍ତ ବାଟେଇ ନେବାର ଦୃଷ୍ଟାନ୍ତ କେବେ ଆମ ଦେଶରେ ଘଟିଛି କି ? ଫୁଟ୍‌ପାଥ୍‌ରେ ଜିନିଷ ବିନା ଜଗୁଆଳିରେ ଛାଡ଼ିବାର ନଜିର ଅଛି କି ? ମଧ୍ୟରାତ୍ରିରେ ଲାଲବତୀ ଜଳିଲେ ଛକରେ ଗାଡ଼ି ଅଟକାଇବାର ସୌଜନ୍ୟ ଓ ଶୃଙ୍ଖଳା ଆମ ଭିତରେ ଅଛି କି ?

ଜାପାନରେ କୌଣସି ବ୍ୟବସାୟିକ ଅନୁଷ୍ଠାନରେ ନିଯୁକ୍ତି ପାଇଲେ କର୍ମଚାରୀକୁ ସେହି ଅନୁଷ୍ଠାନ, ଯାହାକୁ ଗୋଟିଏ ପରିବାର ବୋଲି ବିବେଚନା କରାଯାଏ, ତାହାର ଅଂଶ ହୋଇଯିବାକୁ ପଡ଼େ । ସବୁ କଂପାନୀର ନିଜର ପରମ୍ପରା ରହିଛି । କର୍ମକୁଶଳତା ଓ ନିପୁଣତା ଉପରେ ସେଠାରେ ବିଶେଷ ପ୍ରାଧାନ୍ୟ ଦିଆଯାଏ । ନିଜ ପରିବାରର ସୁଖଦୁଃଖ, ଉତ୍ଥାନ ପତନ ସମୟରେ ଯେଉଁ ତ୍ୟାଗ ଟିକକର ପ୍ରୟୋଜନ ତାହା କର୍ମଚାରୀମାନେ ଅକୁଣ୍ଠିତ ଭାବରେ ଅଜାଡ଼ି ଦେବାକୁ ପ୍ରସ୍ତୁତ ଥାଆନ୍ତି । ଲାଭାଂଶ ବିତରଣ ସମୟରେ ମଧ୍ୟ ଶ୍ରମିକ/ କର୍ମଚାରୀଙ୍କ ଅବଦାନକୁ କଂପାନୀ କର୍ତ୍ତୃପକ୍ଷ ବିଚାରକୁ ନେଇଥାଆନ୍ତି । ବିଶ୍ୱସନୀୟତା ଏବଂ ଆନୁଗତ୍ୟକୁ କଂପାନୀ କର୍ତ୍ତୃପକ୍ଷ ବିଶେଷ ଗୁରୁତ୍ୱ ଦିଅନ୍ତି । ଭାରତରେ ଶ୍ରମିକ ଓ ମାଲିକମାନଙ୍କ ଭିତରେ ଥିବା ମନୋଭାବ ସହିତ ଏହାକୁ ତୁଳନା କଲେ ଏ ବିଷୟରେ ସହଜରେ ବୁଝିହୁଏ । ମୁଁ ଥରେ ମିତ୍‌ସୁଇ କଂପାନୀର ପ୍ରେସିଡ଼େଣ୍ଟଙ୍କୁ ଭେଟିବାକୁ ଯାଇଥିଲି । ଦେଖିଲି ସେ ଗୋଟାଏ ବିରାଟ

ହଲ୍‌ରେ ବସି ଅନ୍ୟମାନଙ୍କ ସହ କାମ କରୁଛନ୍ତି । ତଫାତ୍ ହେଉଛି ତାଙ୍କ ଟେବୁଲ୍‌ଟି ଯାହା ଅନ୍ୟମାନଙ୍କର ଠାରୁ ଟିକିଏ ବଡ଼ । କଂପାନୀର ଦୁଇ, ତିନିଟା ସମ୍ମିଳନୀ କକ୍ଷ ରହିଛି । କର୍ମଚାରୀମାନେ ସେଇ ସମ୍ମିଳନୀ କକ୍ଷରେ ବିଚାର ବିମର୍ଷ ଓ କଥାବାର୍ତ୍ତା କରନ୍ତି । ଏଭଳି ପରିସ୍ଥିତି ଆମ ଦେଶରେ କଳ୍ପନା କରାଯାଇ ନ ପାରେ ।

ଦିନଯାକର କଠିନ ପରିଶ୍ରମ ପରେ କଂପାନୀ ପୁରୁଷମାନେ ମନୋରଂଜନ ପାଇଁ ବାର୍, ରେସ୍ତୋରାଁ, ଗେଇସା ହାଉସ୍‌କୁ ଯାଆନ୍ତି ନିଜ ନିଜର ବ୍ୟବସାୟୀ ବନ୍ଧୁମାନଙ୍କୁ ନେଇ । ସେ ସବୁ ସ୍ଥାନରେ କ୍ୱଚିତ୍ ଦୁର୍ବ୍ୟବହାର କିମ୍ବା ଗଣ୍ଡଗୋଳ ଦେଖାଯାଏ । ଗେଇସା ଝିଅମାନେ ଜ୍ଞାନୀ, ବୁଦ୍ଧିମତୀ, ସଂଗୀତ ଓ ନୃତ୍ୟ ଆଦି ବହୁ କଳାରେ ନିପୁଣା । ସେମାନଙ୍କର କାମ ହେଲା କ୍ଳାନ୍ତ, ବ୍ୟଥିତ ଅତିଥିମାନଙ୍କ ସାଂଗରେ ରହି ସେମାନଙ୍କର ମନକୁ ପୁଣି ଉଜ୍ଜିବୀତ କରିଦେବା । ସେଠି ଭଦ୍ରୋଚିତ ବ୍ୟବହାର ଓ ଶାଳୀନତାକୁ ପ୍ରାଧାନ୍ୟ ଦିଆଯାଏ । ସେଇଭଳି ଚା ପ୍ରସ୍ତୁତି ଏବଂ ପରିବେଷଣ ମଧ୍ୟ ଏ କଳାର ରୂପ ନେଇଛି ଜାପାନରେ । ଜାପାନରେ ଗୋଟିଏ ରୁଚିପୂର୍ଣ୍ଣ ପରିବେଶ ସବୁବେଳେ ଲାଗି ରହିଥାଏ ବୋଲି ସଂକ୍ଷେପରେ କୁହାଯାଇପାରେ ।

ମୋର ମନେଅଛି ବର୍ଷରେ ଦୁଇଟି ମାତ୍ର ଉତ୍ସବରେ ଜାପାନର ସମ୍ରାଟ ଏବଂ ପ୍ରଧାନମନ୍ତ୍ରୀ ଅନ୍ୟମାନଙ୍କ ସହିତ ବିଦେଶୀ କୂଟନୀତିଜ୍ଞମାନଙ୍କୁ ନିମନ୍ତ୍ରଣ କରନ୍ତି । ଜାପାନ ରାଜପ୍ରାସାଦ ସୁଦୃଶ୍ୟ ଉଦ୍ୟାନ ଓ ଘାସ ଲନ୍ ଦ୍ୱାରା ପରିବେଷ୍ଟିତ । ରାଜପ୍ରାସାଦ ପ୍ରାଙ୍ଗଣରେ ସୁସଜ୍ଜିତ ପରିବେଶରେ ବିଦେଶୀ ଅତିଥିମାନଙ୍କୁ ଜାପାନୀ ରୀତିରେ ଆପ୍ୟାୟିତ କରାଯାଏ । ସେ ବର୍ଷ ମୋର ପାଳି ଥିଲା । ମୁଁ ଏବଂ ମୋର ସ୍ତ୍ରୀ ଜାପାନ ରାଜପ୍ରାସାଦର ସୁନ୍ଦର ଓ ସୁସଜ୍ଜିତ ଉଦ୍ୟାନକୁ ଦେଖି ଉପଭୋଗ କରୁଥିଲୁ । ହଠାତ୍ ଚାରିଆଡ଼େ ସମସ୍ତେ ସଜାଗ ହୋଇଗଲେ । ରାସ୍ତାର ଦୁଇକଡ଼ରେ ଅତିଥିମାନେ ଛିଡ଼ା ହେଲେ । ଜଣାପଡ଼ିଲା ସମ୍ରାଟ ହିରୋହିଟୋ ସେ ରାସ୍ତା ଦେଇ ଯିବେ ଏବଂ ଅତିଥିମାନଙ୍କ ଅଭିବାଦନ ଗ୍ରହଣ କରିବେ । କିଛିକ୍ଷଣ ପରେ ଦେଖିଲି ହୀରୋହିଟୋ ସାଧାରଣ ମଣିଷଙ୍କ ଭଳି ସୁଟ୍ ପିନ୍ଧି ଧୀରେ ଧୀରେ ଆସୁଛନ୍ତି ସହକର୍ମୀମାନଙ୍କ ଗହଣରେ । ବିଶ୍ୱାସ କରିହେଲାନି ଏ ସେହି ହିରୋହିଟୋ ଯାହାଙ୍କ ନାଁରେ ଦ୍ୱିତୀୟ ମହାଯୁଦ୍ଧରେ ଜାପାନ ଜର୍ମାନୀ ସହିତ ମିଶି ସାରା ବିଶ୍ୱକୁ ଅକ୍ତିଆର କରିବାକୁ ପ୍ରୟାସ କରିଥିଲା । ଏବେ ବି ଦକ୍ଷିଣପୂର୍ବ ଏସିଆର କେତେକ ଅଂଚଳରେ ଜାପାନୀ ସୈନ୍ୟମାନେ ଲୁଚି ରହିଛନ୍ତି । ଯୁଦ୍ଧ ଶେଷ ହୋଇଛି ଏବଂ ସମ୍ରାଟଙ୍କର ପରାଜୟ ହୋଇଛି ଏହାକୁ ସେମାନେ ବିଶ୍ୱାସ କରିପାରି ନାହାନ୍ତି । ସେଇ ପରାକ୍ରମୀ ହିରୋହିଟୋଙ୍କୁ ଯେ ମୁଁ ନିଜ ଆଖିରେ ଦିନେ ଦେଖିବି ତାହା ବିଶ୍ୱାସ କରି ନଥିଲି । ହିରୋହିଟୋ ଧୀରେ ଧୀରେ ଆସିଲେ । ଜାପାନୀ ଢ଼ଂଗରେ ଅଭିବାଦନ ଗ୍ରହଣ କଲେ । ଶେଷରେ ରାସ୍ତାରୁ ଘାସ ଉପରକୁ ଆସି ମୋ ନିକଟରେ ପହଞ୍ଚି ପଚାରିଲେ ମୁଁ କେଉଁ ଦେଶରୁ ଆସିଛି । ଯେତେବେଳେ ଶୁଣିଲେ

ଯେ ମୁଁ ଭାରତରୁ ଆସିଛି, ସେ ପଚାରିଲେ ଜାପାନ କେମିତି ଲାଗୁଛି । ମୁଁ କହିଲି ଜାପାନ ମୋ ଜୀବନର ଏକ ନୂତନ ଅନୁଭବ । ସେ ଭାରତର ଚା ଓ ଶାଢ଼ୀ ବିଷୟରେ ପଚାରିଲେ ଏବଂ ପରାମର୍ଶ ଦେଲେ ଯେ ଆମେ ଦୁହେଁ ଯେପରି ଜାପାନର ଜଳବାୟୁ ସଂର୍ପକରେ ସବୁବେଳେ ସତର୍କ ରହୁ । ଅନ୍ୟମାନଙ୍କ ପ୍ରତି ଏହା ସମ୍ରାଟଙ୍କର ଥିଲା ସମ୍ବେଦନଶୀଳ ମନୋଭାବ । ଐତିହାସିକ ବ୍ୟକ୍ତିତ୍ୱର ଅଧିକାରୀ ଏହି ମହାନ ସମ୍ରାଟ ଆମ ପାଖକୁ ଆସି ସାଧାରଣ ମଣିଷ ପରି ଆମ ସୁଖ ଦୁଃଖ କଥା ଏବଂ ଜାପାନରେ ରହିବା ପାଇଁ ଆଶ୍ୱାସନା ଦେବା ମୋ ପକ୍ଷରେ ଥିଲା ନୂଆ ପ୍ରକାରର ଅନୁଭୂତି । ମୁଁ ଦିଲ୍ଲୀରେ ରାଷ୍ଟ୍ରପତି ଭବନର ଅଗଷ୍ଟ ୧୫ ଓ ଜାନୁୟାରୀ ୨୬ ତାରିଖରେ ହେଉଥିବା ଆଟ୍‌ହୋମ୍ ସମାବେଶରେ ଯୋଗ ଦେବାର ସୁଯୋଗ ବହୁବାର ପାଇଛି । କିନ୍ତୁ ଏଭଳି ଅଭିଜ୍ଞତା ମୋର କେବେ ହୋଇ ନାହିଁ ।

ଜାପାନର ପୂଜା ପର୍ବରେ ସମସ୍ତେ ଯୋଗ ଦିଅନ୍ତି । ପରମ୍ପରାକୁ ସମ୍ମାନ ଦିଅନ୍ତି । ପାରମ୍ପାରିକ ପୋଷାକ, ନୃତ୍ୟ ଓ ସଂସ୍କୃତିକୁ ସଂରକ୍ଷିତ କରିବାରେ ସମସ୍ତଙ୍କର ସହଯୋଗ ଥାଏ । ପରିବାରଠାରୁ ଆରମ୍ଭ କରି ସ୍କୁଲ ପର୍ଯ୍ୟନ୍ତ ସବୁଠି ଦେଶର ଐତିହ୍ୟ ପରମ୍ପରା ପ୍ରତି ସମ୍ମାନ ଓ ମୂଲ୍ୟବୋଧ ସଂପର୍କରେ ସଚେତନ କରାଯାଏ । ସାରାବର୍ଷ କର୍ମସ୍ଥଳରେ ପାଶ୍ଚାତ୍ୟ ବେଶଭୂଷା ପିନ୍ଧିଲେ ମଧ ପାରମ୍ପରିକ ଉତ୍ସବରେ ଜାପାନୀମାନେ କିମୋନା ପିନ୍ଧିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି । କିମୋନୋ ଜାପାନର ପାରମ୍ପରିକ ପୋଷାକ ।

ସେହିପରି ସାକୁରା ସମୟରେ ସାରା ଜାପାନୀ ଜାତି କିଛିଦିନ ପାଇଁ ମତୁଆଲା ହୋଇଯାଏ । ବୟସ ନିର୍ବିଶେଷରେ ସ୍ତ୍ରୀ ଓ ପୁରୁଷମାନେ ଏକାଠି ହୋଇ ଉପଭୋଗ କରନ୍ତି ଚେରିବ୍ଲୁସମ୍ ଉତ୍ସବକୁ । ସାମୁରାଇ ଯୋଦ୍ଧାଙ୍କ ଭଳି ସାକୁରା କ୍ଷଣସ୍ଥାୟୀ, କିନ୍ତୁ ସୌନ୍ଦର୍ଯ୍ୟ ଓ ସୁଗନ୍ଧରେ ଭରପୁର ଜାପାନର ନିଜସ୍ୱ ଜୀବନ ଦର୍ଶନକୁ ସମ୍ମାନ ଦିଆଯାଏ ।

ପରମ୍ପରା ଓ ଐତିହ୍ୟ ପ୍ରତି ସମ୍ମାନ ଏବଂ ତାର ସଂରକ୍ଷଣ ପ୍ରତି ସଚେତନତା ଆମ ପାଇଁ ଆଦର୍ଶ ହେବା ଉଚିତ । ଫୁଲ ସଜେଇବା ଏବଂ ଚିତ୍ରକଳା ମାଧ୍ୟମରେ ସମଗ୍ର ବିଶ୍ୱକୁ ନିଜ ମଧ୍ୟରେ ପ୍ରକାଶ କରିବା ପାଇଁ ପ୍ରତ୍ୟେକ ଜାପାନୀ ଉଦ୍ୟମ କରୁଥାଏ । ସମସ୍ତ ଅଭିବ୍ୟକ୍ତି ମାଧ୍ୟମରେ ବିଜ୍ଞାନ ସମ୍ମତ ଚିନ୍ତାଧାରା, ରୁଚିପୂର୍ଣ୍ଣ ବ୍ୟବହାର ଓ କଳାତ୍ମକ ସୃଷ୍ଟି ଭିତରେ ଆକାଶ, ପୃଥିବୀ ଓ ମଣିଷ ମଧ୍ୟରେ ସମନ୍ୱୟ ଘଟାଇ ଜାପାନୀମାନେ ଉତ୍କର୍ଷତାର ଶୀର୍ଷକୁ ଛୁଇଁବା ପାଇଁ ସେମାନଙ୍କର ଉଦ୍ୟମ ଏବେ ମଧ ଅବ୍ୟାହତ ରଖିଛନ୍ତି । ଗତ ଦେଢ଼ଶହ ବର୍ଷରେ ଜାପାନର ଆଭିମୁଖ୍ୟରେ ବହୁ ପରିବର୍ତ୍ତନ ଆସିଛି । ପାଶ୍ଚାତ୍ୟ ସଭ୍ୟତା ଓ ନୂତନତ୍ୱକୁ କେତେକାଂଶରେ ଜାପାନ ଗ୍ରହଣ କରିଛି । ତଥାପି ଜାପାନ ନିଜର ଆତ୍ମାକୁ ହଜାଇ ଦେଇ ନାହିଁ । ସ୍ୱାଭିମାନର ଅର୍ଥ ଆମ ଦେଶରେ ଭିନ୍ନ । ଉତ୍କର୍ଷତାର ଆନନ୍ଦ ଓ ଜାତୀୟ ଗର୍ବ ପ୍ରତିଫଳିତ ହୁଏ ଜାପାନୀମାନଙ୍କ ସ୍ୱାଭିମାନରେ ।

ଗୋଟିଏ ପ୍ରଗତିଶୀଳ ସଭ୍ୟ ଓ ରୁଚିପୂର୍ଣ୍ଣ ରାଷ୍ଟ୍ରରେ ଶୃଙ୍ଖଳା, ସାଧୁତା ଓ ସଚ୍ଚୋଟ ପଣିଆ ସହିତ ଶାଳୀନତା ଏବଂ ବିନମ୍ରତାର ଯେ ପ୍ରୟୋଜନ ରହିଛି ତାହା ଜାପାନକୁ ଦେଖି ଆମ ସମସ୍ତଙ୍କର ହୃଦୟଙ୍ଗମ କରିବା ଉଚିତ ।

❋❋❋

# ଆଉଟ ସୋର୍ସିଂ ଓ ସମ୍ଭାବନା

କିଛିବର୍ଷ ହେବ ଆମେରିକାର କେତେକ ରାଜନୀତିଜ୍ଞ, ବୁଦ୍ଧିଜୀବୀ, ଅର୍ଥନୀତି ବିଶେଷଜ୍ଞ ଓ ମିଡ଼ିଆ ମଧ୍ୟରେ ଜଗତୀକରଣ, ଆମେରିକାର ନିଯୁକ୍ତି କ୍ଷେତ୍ର ଉପରେ ପ୍ରତିକୂଳ କ୍ଷତିକାରକ ପରିଣାମ ବିଷୟରେ ତର୍କ ବିତର୍କ ଚାଲିଛି । ଏହିଭଳି କେତେକ ବିଶେଷଜ୍ଞ ଯେଉଁମାନେ ଜଗତୀକରଣର ସମର୍ଥକ ଥିଲେ ବର୍ତ୍ତମାନ ସେମାନେ ସେମାନଙ୍କର ମତ ପରିବର୍ତ୍ତନ କରିବାକୁ ଲାଗିଲେଣି । ସେମାନଙ୍କର ମତରେ,ବିଶ୍ୱ ବାଣିଜ୍ୟ ଏବେ ଜଳପଥ କିମ୍ବା ଆକାଶ ପଥ (ପାଣି ବା ଉଡାଜାହାଜ) ରେ ସୀମିତ ନୁହେଁ । କମ୍ୟୁନିକେଶନ ଟେକ୍ନୋଲୋଜି ଏବଂ ଇଲେକ୍‌ଟ୍ରୋନିକ୍‌ସ ସହାୟତାରେ ସେବା ରପ୍ତାନି ଆଗାମୀ ଦଶନ୍ଧିରେ ୪ କୋଟି ଆମେରିକା ବାସୀଙ୍କର କର୍ମ ନିଯୁକ୍ତିକୁ ଅସୁରକ୍ଷିତ କରିବାର ଆଶଙ୍କା ରହିଛି । ଏ ପରିପ୍ରେକ୍ଷୀରେ ପ୍ରଶ୍ନ ଉଠୁଛି, ନୀତି ନିର୍ଦ୍ଧାରକମାନେ ଜଗତୀକରଣକୁ ପ୍ରୋତ୍ସାହନ ଦେବେ ନା ବଦଳରେ ପ୍ରତିବନ୍ଧକ ସୃଷ୍ଟି କରିବେ । ଲାଟିନ୍ ଆମେରିକାରେ ଉଦାରୀକରଣ ଓ ବାଣିଜ୍ୟକର ହ୍ରାସର ପରିଣାମ ଏବଂ ଚୀନ୍‌ର ସଂରକ୍ଷଣାତ୍ମକ ବାଣିଜ୍ୟ ନୀତିର ସଫଳତାର ଦୁଇଟି ବିରୋଧାତ୍ମକ ଉଦାହରଣ ରହିଛି । ତେଣୁ ନୀତି ନିର୍ଦ୍ଧାରକଙ୍କ ମନରେ ଆଉଟ୍ ସୋର୍ସିଂ ହେତୁ ନିଯୁକ୍ତି ସମ୍ବନ୍ଧୀୟ ଉଦ୍‌ବେଗତା ଓ ଦ୍ୱନ୍ଦ୍ୱ ଆସିବା ସ୍ୱାଭାବିକ ।

ଏକବିଂଶ ଶତାବ୍ଦୀରେ ଚୀନ ଓ ଭାରତର ଅର୍ଥନୈତିକ ଶକ୍ତି ଭାବେ ଉଦୟ ଏବଂ ବିଶ୍ୱ ନେତୃତ୍ୱ ନେବାର ସମ୍ଭାବନାର ପରିସ୍ଥିତି ସହିତ ଖାପ ଖୁଆଇବାର ନୂତନ ରଣକୌଶଳର ପ୍ରୟୋଜନିୟତା ବିଷୟରେ ଆମେରିକାରେ ସହମତି ରହିଛି । କେତେକ ଭାବନ୍ତି,ଆମେରିକାର ଏ ଦୁଇଟି ଦେଶ ସହିତ ଦ୍ୱିପାକ୍ଷିକ ବାଣିଜ୍ୟ ଭବିଷ୍ୟତରେ ସହାୟକ ହେବ । ସେଥିପାଇଁ ଶିକ୍ଷା କ୍ଷେତ୍ରରେ ସଂଶୋଧନ ଆଣି ଉପଯୁକ୍ତ କୁଶଳୀ ଏବଂ ଅଣକୁଶଳୀ କର୍ମୀଙ୍କର ସୃଷ୍ଟିରେ କୌଣସି ଆଉଟ୍‌ସୋର୍ସିଂର ପ୍ରୟୋଜନ ରହିବ ନାହିଁ । ଏଥିସହିତ ଟ୍ୟାକ୍ସ କ୍ଷେତ୍ରରେ ସଂଶୋଧନ ଆଣି ଆମେରିକାରେ ଚାକିରି ସୃଷ୍ଟି କରୁଥିବା କଂପାନି ଗୁଡ଼ିକୁ ପ୍ରୋତ୍ସାହନ ହେବାକୁ କଳ୍ପନା ମଧ୍ୟ କରାହେଉଛି । କିନ୍ତୁ ଏଭଳି ଚିନ୍ତାଧାରା ବିରୁଦ୍ଧରେ ସ୍ୱର ଉଠିଲାଣି । ପ୍ରଖ୍ୟାତ ଅର୍ଥନୀତିଜ୍ଞ ଭଗବତୀଙ୍କ ମତରେ, ଜଗତୀକରଣ ଯୋଗୁ ଆମେରିକା ଓ ଅନ୍ୟ ବିକଶିତ ଦେଶ ଗୁଡ଼ିକରେ ନୂଆ ନୂଆ କାମ ସୃଷ୍ଟି ହେଉଛି ଏବଂ ନିଯୁକ୍ତିର ପରିଧି ବ୍ୟାପକ ହେଉଛି । ଏ ତର୍କ ବିତର୍କର ସମାପ୍ତି ଏତେ ସହଜ ନୁହେଁ ।

ଅର୍ଥନୀତି ଓ ଟେକ୍ନୋଲୋଜି ଦୃଷ୍ଟିରୁ ପୃଥିବୀ ଆଉ ଗୋଲ ନୁହେଁ, ବରଂ ସମତଳ। ବାଣିଜ୍ୟ ତାଲିକାଭୁକ୍ତ ଯେ କୌଣସି ଦ୍ରବ୍ୟ ଉଡ଼ାଜାହାଜ, ପାଣି ଜାହାଜ କିମ୍ବା ଅପ୍ଟିକାଲ ଫାଇବର ମାଧ୍ୟମରେ ସ୍ଥାନାନ୍ତର ହେବା ସହ ବିଶ୍ୱବାଣିଜ୍ୟ ଅଭିବୃଦ୍ଧିରେ ସହାୟକ ହେବ। ବିଶ୍ୱ ବାଣିଜ୍ୟର ପରିମାଣ ଅପେକ୍ଷାକୃତ ଭାବେ ବୃହାଦାକାର ହେବ।

କଥା ହେଉଛି ବିକଶିତ ଦେଶ ଗୁଡ଼ିକର ନୀତି ନିର୍ଦ୍ଧାରକ ମାନେ ହୃଦୟଙ୍ଗମ କରିବା ଉଚିତ୍ ଯେ ଇଂରାଜୀ ଭାଷାରେ ଦକ୍ଷତା ଥିବା କୌଣସି ଭାରତୀୟ କମ୍ ପାରିଶ୍ରମିକରେ ଗୁଣାତ୍ମକ ମାନରେ ସାଲିସ୍ ନ କରି କିଛି କାର୍ଯ୍ୟ ସମାପନ କରିଲେ ବିରୋଧ କାହିଁକି ? ଜଗତୀକରଣର ସଫଳତା ପାଇଁ ଏ ବାସ୍ତବତାକୁ ସ୍ୱୀକାର କରିବାକୁ ପଡ଼ିବ। ବିକଶିତ ଦେଶ ଗୁଡ଼ିକର ଜୀବନ ପ୍ରଣାଳୀ, ଶିକ୍ଷା, କାର୍ଯ୍ୟଶୈଳୀରେ ମାନସିକ ପରିବର୍ତ୍ତନ ନ ହେବା ପର୍ଯ୍ୟନ୍ତ ଏଭଳି ଉଦ୍‌ବେଗତା ଓ କର୍ମ ନିଯୁକ୍ତିର ଅନିଶ୍ଚିତତା ରହିବ।

ଆମେରିକାର ବିଶିଷ୍ଟ ବୁଦ୍ଧିଜୀବୀ ଅର୍ଥନୀତିଜ୍ଞ ଆଲାନ୍ ବ୍ଲିଣ୍ଡରଙ୍କ ଅନୁସାରେ, ଆଉଟ୍ ସୋର୍ସିଂ ହେତୁ ଆମେରିକାର ପ୍ରାୟ ୪ ରୁ ୫ କୋଟି ବୃତ୍ତି ବା ନିଯୁକ୍ତି ବିପଦ ସଂକୁଳ। ୮୧୭ଟି ପେଷାବୃତ୍ତି ବିପନ୍ନ। ଅସୁରକ୍ଷିତ ଅବସ୍ଥାରେ ଥିବା କର୍ମୀ ତାଲିକାରେ ଅଛନ୍ତି କମ୍ପ୍ୟୁଟର ପ୍ରୋଗ୍ରାମର, ଆକଚୁଆରୀ, ଫିଲ୍ମ/ଭିଡ଼ିଓ ସଂପାଦକ,ଗଣିତଜ୍ଞ, ମେଡ଼ିକାଲ ଟ୍ରାନ୍ସକ୍ରିପ୍‌ସନିଷ୍ଟ, ଅନୁବାଦକ, ଭାଷାନ୍ତରିକ ବା ଇଣ୍ଟରପ୍ରେଟର, ଅର୍ଥନୀତିଜ୍ଞ, ଗ୍ରାଫିକ୍ କପିଂ,ମାଇକ୍ରୋ ବାଇଓଲୋଜିଷ୍ଟ, ଅଡ଼ିଟର, ଡ଼ାଟା ଏଣ୍ଟ୍ରି ଓ ଅନ୍ୟାନ୍ୟ ଚାକିରି। ଏ ସବୁ କାମ ଅନ୍ୟ ଦେଶରେ କାର୍ଯ୍ୟକାରୀ ହେବାର ସମ୍ଭାବନା ଅଧିକ।

ବର୍ତ୍ତମାନ ବି.ପି.ଓ ପାଇଁ ଭାରତ ଅପେକ୍ଷାକୃତ ଅଧିକ ପସନ୍ଦ ସ୍ଥାନ। କିନ୍ତୁ ଏହା ଦୀର୍ଘକାଳ ସ୍ଥାୟୀ ନୁହେଁ। ପୂର୍ବ ୟୁରୋପ, ଚୀନ ଓ ଭିଏତ୍‌ନାମ ପ୍ରଭୃତି ଦେଶ ଗୁଡ଼ିକରୁ ପ୍ରତିଯୋଗିତାର ସୂଚନା ମିଳିଲାଣି। ବୃହତ ବ୍ୟବସାୟରେ କେ.ପି.ଓ ବା ନଲେଜ ପ୍ରସେସ ଆଉଟ୍ ସୋର୍ସିଂ ପାଇଁ ଚୀନ ପ୍ରଭୃତି ଦେଶରେ ଉଦ୍ୟମ ହେଲାଣି। ନଲେଜ ଭିତ୍ତିକ ବ୍ୟବସାୟ ଆଉଟସୋର୍ସିଂରେ ଅତି କୁଶଳୀ ବ୍ୟକ୍ତିଙ୍କର ପ୍ରୟୋଜନ ବେଶୀ। କ୍ଷତି ବା ବିପଦର ସମ୍ଭାବନା ମଧ୍ୟ ଅଛି। କିନ୍ତୁ ଲାଭର ମାତ୍ରା ଅଧିକ।

ଜଗତୀକରଣରେ ଆମ ପ୍ରଦେଶର ଅଂଶ ଗ୍ରହଣ ଓ ଉନ୍ନତି ପାଇଁ ସବୁ ଦିଗରୁ ଚିନ୍ତା କରିବାର ପ୍ରୟୋଜନ ରହିଛି। ଏହାର ପରିଧି ବ୍ୟାପକ। ବି.ପି.ଓ କିମ୍ବା କେତେକ କଂପାନି ଚାକିରୀ ମଧ୍ୟରେ ସୀମିତ ନୁହେଁ।



# ଆଉଟ ସୋର୍ସିଂ ଓ ସମ୍ଭାବନା

କିଛିବର୍ଷ ହେବ ଆମେରିକାର କେତେକ ରାଜନୀତିଜ୍ଞ, ବୁଦ୍ଧିଜୀବୀ, ଅର୍ଥନୀତି ବିଶେଷଜ୍ଞ ଓ ମିଡ଼ିଆ ମଧ୍ୟରେ ଜଗତୀକରଣ, ଆମେରିକାର ନିଯୁକ୍ତି କ୍ଷେତ୍ର ଉପରେ ପ୍ରତିକୂଳ କ୍ଷତିକାରକ ପରିଣାମ ବିଷୟରେ ତର୍କ ବିତର୍କ ଚାଲିଛି । ଏହିଭଳି କେତେକ ବିଶେଷଜ୍ଞ ଯେଉଁମାନେ ଜଗତୀକରଣର ସମର୍ଥକ ଥିଲେ ବର୍ତ୍ତମାନ ସେମାନେ ସେମାନଙ୍କର ମତ ପରିବର୍ତ୍ତନ କରିବାକୁ ଲାଗିଲେଣି । ସେମାନଙ୍କର ମତରେ,ବିଶ୍ୱ ବାଣିଜ୍ୟ ଏବେ ଜଳପଥ କିମ୍ବା ଆକାଶ ପଥ (ପାଣି ବା ଉଡାଜାହାଜ) ରେ ସୀମିତ ନୁହେଁ । କମ୍ୟୁନିକେଶନ ଟେକ୍ନୋଲୋଜି ଏବଂ ଇଲେକ୍ଟ୍ରୋନିକ୍ସ ସହାୟତାରେ ସେବା ରପ୍ତାନି ଆଗାମୀ ଦଶନ୍ଧିରେ ୪ କୋଟି ଆମେରିକା ବାସୀଙ୍କର କର୍ମ ନିଯୁକ୍ତିକୁ ଅସୁରକ୍ଷିତ କରିବାର ଆଶଙ୍କା ରହିଛି । ଏ ପରିପ୍ରେକ୍ଷୀରେ ପ୍ରଶ୍ନ ଉଠୁଛି, ନୀତି ନିର୍ଦ୍ଧାରକମାନେ ଜଗତୀକରଣକୁ ପ୍ରୋତ୍ସାହନ ଦେବେ ନା ବଦଳରେ ପ୍ରତିବନ୍ଧକ ସୃଷ୍ଟି କରିବେ । ଲାଟିନ୍ ଆମେରିକାରେ ଉଦାରୀକରଣ ଓ ବାଣିଜ୍ୟକର ହ୍ରାସର ପରିଣାମ ଏବଂ ଚୀନ୍‌ର ସଂରକ୍ଷଣାତ୍ମକ ବାଣିଜ୍ୟ ନୀତିର ସଫଳତାର ଦୁଇଟି ବିରୋଧାତ୍ମକ ଉଦାହରଣ ରହିଛି । ତେଣୁ ନୀତି ନିର୍ଦ୍ଧାରକଙ୍କ ମନରେ ଆଉଟ୍ ସୋର୍ସିଂ ହେତୁ ନିଯୁକ୍ତି ସମ୍ବନ୍ଧୀୟ ଉଦ୍‌ବେଗତା ଓ ଦ୍ୱନ୍ଦ୍ୱ ଆସିବା ସ୍ୱାଭାବିକ ।

ଏକବିଂଶ ଶତାବ୍ଦୀରେ ଚୀନ ଓ ଭାରତର ଅର୍ଥନୈତିକ ଶକ୍ତି ଭାବେ ଉଦୟ ଏବଂ ବିଶ୍ୱ ନେତୃତ୍ୱ ନେବାର ସମ୍ଭାବନାର ପରିସ୍ଥିତି ସହିତ ଖାପ ଖୁଆଇବାର ନୂତନ ରଣକୌଶଳର ପ୍ରୟୋଜନିୟତା ବିଷୟରେ ଆମେରିକାରେ ସହମତି ରହିଛି । କେତେକ ଭାବନ୍ତି,ଆମେରିକାର ଏ ଦୁଇଟି ଦେଶ ସହିତ ଦ୍ୱିପାକ୍ଷିକ ବାଣିଜ୍ୟ ଭବିଷ୍ୟତରେ ସହାୟକ ହେବ । ସେଥିପାଇଁ ଶିକ୍ଷା କ୍ଷେତ୍ରରେ ସଂଶୋଧନ ଆଣି ଉପଯୁକ୍ତ କୁଶଳୀ ଏବଂ ଅଣକୁଶଳୀ କର୍ମୀଙ୍କର ସୃଷ୍ଟିରେ କୌଣସି ଆଉଟ୍‌ସୋର୍ସିଂର ପ୍ରୟୋଜନ ରହିବ ନାହିଁ । ଏଥିସହିତ ଟ୍ୟାକ୍ସ କ୍ଷେତ୍ରରେ ସଂଶୋଧନ ଆଣି ଆମେରିକାରେ ଚାକିରି ସୃଷ୍ଟି କରୁଥିବା କଂପାନି ଗୁଡ଼ିକୁ ପ୍ରୋତ୍ସାହନ ହେବାକୁ କଳ୍ପନା ମଧ୍ୟ କରାହେଉଛି । କିନ୍ତୁ ଏଭଳି ଚିନ୍ତାଧାରା ବିରୁଦ୍ଧରେ ସ୍ୱର ଉଠିଲାଣି । ପ୍ରଖ୍ୟାତ ଅର୍ଥନୀତିଜ୍ଞ ଭଗବତୀଙ୍କ ମତରେ, ଜଗତୀକରଣ ଯୋଗୁ ଆମେରିକା ଓ ଅନ୍ୟ ବିକଶିତ ଦେଶ ଗୁଡ଼ିକରେ ନୂଆ ନୂଆ କାମ ସୃଷ୍ଟି ହେଉଛି ଏବଂ ନିଯୁକ୍ତିର ପରିଧି ବ୍ୟାପକ ହେଉଛି । ଏ ତର୍କ ବିତର୍କର ସମାପ୍ତି ଏତେ ସହଜ ନୁହେଁ ।

ଅର୍ଥନୀତି ଓ ଟେକ୍ନୋଲୋଜି ଦୃଷ୍ଟିରୁ ପୃଥିବୀ ଆଉ ଗୋଲ ନୁହେଁ, ବରଂ ସମତଳ । ବାଣିଜ୍ୟ ତାଲିକାଭୁକ୍ତ ଯେ କୌଣସି ଦ୍ରବ୍ୟ ଉଡ଼ାଜାହାଜ, ପାଣି ଜାହାଜ କିମ୍ବା ଅପ୍ଟିକାଲ ଫାଇବର ମାଧ୍ୟମରେ ସ୍ଥାନାନ୍ତର ହେବା ସହ ବିଶ୍ୱବାଣିଜ୍ୟ ଅଭିବୃଦ୍ଧିରେ ସହାୟକ ହେବ । ବିଶ୍ୱ ବାଣିଜ୍ୟର ପରିମାଣ ଅପେକ୍ଷାକୃତ ଭାବେ ବୃହାଦାକାର ହେବ ।

କଥା ହେଉଛି ବିକଶିତ ଦେଶ ଗୁଡ଼ିକର ନୀତି ନିର୍ଦ୍ଧାରକ ମାନେ ହୃଦୟଙ୍ଗମ କରିବା ଉଚିତ୍ ଯେ ଇଂରାଜୀ ଭାଷାରେ ଦକ୍ଷତା ଥିବା କୌଣସି ଭାରତୀୟ କମ୍ ପାରିଶ୍ରମିକରେ ଗୁଣାତ୍ମକ ମାନରେ ସାଲିସ୍ ନ କରି କିଛି କାର୍ଯ୍ୟ ସମାପନ କରିଲେ ବିରୋଧ କାହିଁକି ? ଜଗତୀକରଣର ସଫଳତା ପାଇଁ ଏ ବାସ୍ତବତାକୁ ସ୍ୱୀକାର କରିବାକୁ ପଡ଼ିବ । ବିକଶିତ ଦେଶ ଗୁଡ଼ିକର ଜୀବନ ପ୍ରଣାଳୀ, ଶିକ୍ଷା, କାର୍ଯ୍ୟଶୈଳୀରେ ମାନସିକ ପରିବର୍ତ୍ତନ ନ ହେବା ପର୍ଯ୍ୟନ୍ତ ଏଭଳି ଉଦ୍‌ବେଗତା ଓ କର୍ମ ନିଯୁକ୍ତିର ଅନିଶ୍ଚିତତା ରହିବ ।

ଆମେରିକାର ବିଶିଷ୍ଟ ବୁଦ୍ଧିଜୀବୀ ଅର୍ଥନୀତିଜ୍ଞ ଆଲାନ୍ ବ୍ଲିଣ୍ଡରଙ୍କ ଅନୁସାରେ, ଆଉଟ୍ ସୋର୍ସିଂ ହେତୁ ଆମେରିକାର ପ୍ରାୟ ୪ ରୁ ୫ କୋଟି ବୃତ୍ତି ବା ନିଯୁକ୍ତି ବିପଦ ସଂକୁଳ । ୮୧୭ଟି ପେଷାବୃତ୍ତି ବିପନ୍ନ । ଅସୁରକ୍ଷିତ ଅବସ୍ଥାରେ ଥିବା କର୍ମୀ ତାଲିକାରେ ଅଛନ୍ତି କମ୍ପ୍ୟୁଟର ପ୍ରୋଗ୍ରାମର, ଆକଚୁଆରୀ, ଫିଲ୍ମ/ଭିଡ଼ିଓ ସଂପାଦକ,ଗଣିତଜ୍ଞ, ମେଡ଼ିକାଲ ଟ୍ରାନ୍ସକ୍ରିପ୍‌ସନିଷ୍ଟ, ଅନୁବାଦକ, ଭାଷାନ୍ତରିକ ବା ଇଣ୍ଟେରପ୍ରେଟର, ଅର୍ଥନୀତିଜ୍ଞ, ଗ୍ରାଫିକ୍ କପିଂ,ମାଇକ୍ରୋ ବାଇଓଲୋଜିଷ୍ଟ, ଅଡ଼ିଟର, ଡ଼ାଟା ଏଣ୍ଟ୍ରି ଓ ଅନ୍ୟାନ୍ୟ ଚାକିରି । ଏ ସବୁ କାମ ଅନ୍ୟ ଦେଶରେ କାର୍ଯ୍ୟକାରୀ ହେବାର ସମ୍ଭାବନା ଅଧିକ ।

ବର୍ତ୍ତମାନ ବି.ପି.ଓ ପାଇଁ ଭାରତ ଅପେକ୍ଷାକୃତ ଅଧିକ ପସନ୍ଦ ସ୍ଥାନ । କିନ୍ତୁ ଏହା ଦୀର୍ଘକାଳ ସ୍ଥାୟୀ ନୁହେଁ । ପୂର୍ବ ୟୁରୋପ, ଚୀନ ଓ ଭିଏତ୍‌ନାମ ପ୍ରଭୃତି ଦେଶ ଗୁଡ଼ିକରୁ ପ୍ରତିଯୋଗିତାର ସୂଚନା ମିଳିଲାଣି । ବୃହତ ବ୍ୟବସାୟରେ କେ.ପି.ଓ ବା ନଲେଜ ପ୍ରସେସ ଆଉଟ୍ ସୋର୍ସିଂ ପାଇଁ ଚୀନ ପ୍ରଭୃତି ଦେଶରେ ଉଦ୍ୟମ ହେଲାଣି । ନଲେଜ ଭିତ୍ତିକ ବ୍ୟବସାୟ ଆଉଟସୋର୍ସିଂରେ ଅତି କୁଶଳୀ ବ୍ୟକ୍ତିଙ୍କର ପ୍ରୟୋଜନ ବେଶୀ । କ୍ଷତି ବା ବିପଦର ସମ୍ଭାବନା ମଧ୍ୟ ଅଛି । କିନ୍ତୁ ଲାଭର ମାତ୍ରା ଅଧିକ ।

ଜଗତୀକରଣରେ ଆମ ପ୍ରଦେଶର ଅଂଶ ଗ୍ରହଣ ଓ ଉନ୍ନତି ପାଇଁ ସବୁ ଦିଗରୁ ଚିନ୍ତା କରିବାର ପ୍ରୟୋଜନ ରହିଛି । ଏହାର ପରିଧି ବ୍ୟାପକ । ବି.ପି.ଓ କିମ୍ବା କେତେକ କଂପାନି ଚାକିରୀ ମଧ୍ୟରେ ସୀମିତ ନୁହେଁ ।



# 'ବିମାରୁ' ଓଡ଼ିଶା

ନିକୋଲାସ କ୍ରିଷ୍ଟୋଫ ଆମେରିକାର ଜଣେ ସମ୍ମାନାସ୍ପଦ ସ୍ତମ୍ଭକାର । ଦେଶରେ ଜନପ୍ରିୟ ସଂବାଦପତ୍ର ନ୍ୟୁୟର୍କ ଟାଇମ୍ସରେ ତାଙ୍କର ଲେଖା ସବୁ ପ୍ରକାଶିତ ହୁଏ । କ୍ରିଷ୍ଟୋଫଙ୍କ ନିରପେକ୍ଷ ବିଶ୍ଳେଷଣ ଏବଂ ମନ୍ତବ୍ୟ ଆମେରିକାର ପାଠକଙ୍କ ଦ୍ୱାରା ଆଦୃତ ଏବଂ ଏହା ଜନମତକୁ ପ୍ରଭାବିତ କରେ । ନିକଟ ଅତୀତରେ ସେ ବିହାରର କିଛି ଅଞ୍ଚଳ ଭ୍ରମଣ କରି, ଭାରତ-ଚୀନ ପ୍ରଗତିର ଦୌଡ଼ରେ ଭାରତ କିଭଳି ପଛରେ ପଡ଼ିଯାଉଛି, ସେ ବିଷୟରେ ଉଲ୍ଲେଖ କରିଛନ୍ତି । କେତେକ ବୁଦ୍ଧିଜୀବୀ ଏବଂ ରାଜନୈତିକ ନେତାଙ୍କର ଧାରଣା ଯେ ଯଦି ବିଂଶ ଶତାବ୍ଦୀ ପାଶ୍ଚାତ୍ୟ ଦେଶମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲା, ଏକବିଂଶ ଶତାବ୍ଦୀରେ ନେତୃତ୍ୱ ଏସିଆ ମହାଦେଶ ନେବ । ଏସିଆର ଭାରତ ଓ ଚୀନ ହିଁ ଦୁଇ ମହାଶକ୍ତି ଭାବେ ଉଦୀୟମାନ ହେବେ, ଏବଂ ଜନସଂଖ୍ୟା ଯାହା ପ୍ରଗତିର ବାଧକ ଭାବେ ପରିଗଣିତ ହେଉଥିଲା, ତାହା ଏବେ ହିତକର ଭାବେ ସହାୟକ ହେବ ।

କ୍ରିଷ୍ଟୋଫ ତାଙ୍କ ଲେଖାରେ ଉଲ୍ଲେଖ କରିଛନ୍ତି ଯେ, ବିହାରର ଶୋଚନୀୟ ଓ ନୈରାଶ୍ୟଜନକ ପରିସ୍ଥିତି 'ବିମାରୁ' (ଅବିଭକ୍ତ ବିହାର, ମଧ୍ୟ ପ୍ରଦେଶ, ରାଜସ୍ଥାନ ଏବଂ ଉତ୍ତର ପ୍ରଦେଶ) ପ୍ରଦେଶ ଗୁଡ଼ିକରେ ଦୃଷ୍ଟିଗୋଚର ହୁଏ । ସେ ସଂକ୍ରାନ୍ତରେ କ୍ରିଷ୍ଟୋଫ ଟିପ୍ପଣୀ ଦେଇଛନ୍ତି ଯେ ଓଡ଼ିଶା ମଧ୍ୟ 'ବିମାରୁ'ରେ ସ୍ଥାନ ପାଇବା ପାଇଁ ଯୋଗ୍ୟ । ତାଙ୍କ ମତରେ, ଉପର ଲିଖିତ ପ୍ରଦେଶ ଗୁଡ଼ିକରେ ବିଦ୍ୟୁତ ବିତରଣରେ ଅବ୍ୟବସ୍ଥା, ସବୁ ସ୍ତରରେ ବ୍ୟାପକ ଦୁର୍ନୀତି, ଅପରାଧ ହାରରେ ବୃଦ୍ଧି, କୃଷି କ୍ଷେତ୍ରରେ ଦୂରବସ୍ଥା, ରାଜନେତା ଓ ମାଫିଆଙ୍କ ମଧ୍ୟରେ ମଧୁଚନ୍ଦ୍ରିକା, ଅର୍ଥନୈତିକ ପ୍ରଗତିରେ ବାଧକ ଭାବେ ଦଣ୍ଡାୟମାନ । ଏ ଦୃଶ୍ୟକ୍ରମରେ ପରିବର୍ତ୍ତନ ବା ସୁଧାର ନ ଆସିଲେ, କୌଣସି ଉନ୍ନୟନର ସମ୍ଭାବନା କ୍ଷୀଣ । ସେ ଯୁକ୍ତି ବାଢ଼ିଛନ୍ତି ଯେ ବିହାରର ଗ୍ରାମୀଣ ଜୀବନରେ ପ୍ରଗତିର କୌଣସି ଆଭାସ ନାହିଁ । ସେଠାରେ ସ୍କୁଲ ଅଛି, ଶିକ୍ଷକ ନାହାନ୍ତି କିମ୍ବା ଅନୁପସ୍ଥିତ ରହନ୍ତି । ଶିକ୍ଷକ ନିଯୁକ୍ତି ପାଇଁ ଲାଞ୍ଚ ଦେବାକୁ ପଡ଼େ । ସ୍ଥାନୀୟ ହସ୍ପିଟାଲ ଖାଲି ଫାଇଲ ପତ୍ରରେ । ଏଠାରେ ଡ଼ାକ୍ତର ନଥାନ୍ତି, କି ଔଷଧ ସୁଦ୍ଧା ମିଳେନାହିଁ । ହସ୍‌ପିଟାଲ ବିଲଡ଼ିଂରେ ଦୁଆର, ଝିଡ଼କି ନଥାଏ । କଥାହେଉଛି ସରକାରୀ

ବଜେଟ୍‌ରେ ଏଥିପାଇଁ ଅର୍ଥର ବ୍ୟବସ୍ଥା ଥାଏ । କିନ୍ତୁ ସେ ଅର୍ଥ ବାଟମାରଣା ହୁଏ ଏବଂ ଅନ୍ୟ ପକେଟକୁ ଯାଏ । ଶିକ୍ଷା ବ୍ୟବସ୍ଥାରେ ମଧ୍ୟ ସମାନ ଅବସ୍ଥା । ଏକଥା ସ୍ୱୀକାର୍ଯ୍ୟ ଯେ ଭାରତର ଗ୍ରାମାଞ୍ଚଳ ମାନଙ୍କରେ ପୁଷ୍ଟିକର ଖାଦ୍ୟର ଅଭାବ ଯୋଗୁ ପ୍ରାୟ ୪୦ ପ୍ରତିଶତ ଭାରତୀୟ ପୁଷ୍ଟିହୀନତା ରୋଗରେ ପୀଡ଼ିତ । ଏହାର ପ୍ରତ୍ୟକ୍ଷ ପରିଣାମ ଦେଶର ଅର୍ଥନୈତିକ ପ୍ରଗତି ଓ ଶିଶୁ ବିକାଶ ଉପରେ ପଡୁଛି । ତେଣୁ କ୍ରିଷ୍ଟୋଫଙ୍କ ମତରେ, ଯଦି ବର୍ତ୍ତମାନଠାରୁ ପଦକ୍ଷେପ ନ ନିଆଯାଏ, ତେବେ ୨୦୫୦ ମସିହା ବେଳକୁ ମଧ୍ୟ ଅନାହାର, ନିରକ୍ଷରତା ଏବଂ ଅସୁସ୍ଥତା ଭାରତର ମୁଖ୍ୟ ସମସ୍ୟା ହୋଇ ରହିବ ।

ଅପରପକ୍ଷେ ଚୀନର ବିକାଶ ଯାତ୍ରାରେ ବହୁ ସମସ୍ୟା ରହିଛି । ଧନୀ ଓ ଦରିଦ୍ରର ତାରତମ୍ୟ ବୃଦ୍ଧି ପାଇଛି । ସହର ଓ ଗ୍ରାମାଞ୍ଚଳର ବିକାଶରେ ବ୍ୟବଧାନ ବଢ଼ିବାରେ ଲାଗିଛି । କିନ୍ତୁ ଚୀନ ଗ୍ରାମୀଣ ଜୀବନରେ ମୌଳିକ ଶିକ୍ଷାପ୍ରଦାନକୁ ପ୍ରାଧାନ୍ୟ ଦେଇଛି ଏବଂ ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ତୁଳନାତ୍ମକ ଭାବେ ପ୍ରଗତି କରିଛି ।

ଗୋଟିଏ ଦେଶର ସାମଗ୍ରିକ ପ୍ରଗତିରେ ଗ୍ରାମାଞ୍ଚଳକୁ ଅବହେଳା କରି ହେବନାହିଁ । ଭାରତର ବେଶୀଭାଗ ଲୋକ ଗ୍ରାମବାସୀ । କୃଷି ହିଁ ସେମାନଙ୍କର ଜୀବିକା । ତେଣୁ ଦେଶରେ କୃଷି ଓ ଶିଳ୍ପକୁ ଉପେକ୍ଷା କରିହେବ ନାହିଁ । ଟେକ୍ନୋଲୋଜି ଭିତ୍ତିକ ସେବାକ୍ଷେତ୍ର ଅଳ୍ପଦିନ ପାଇଁ ଦେଶର ଅର୍ଥନୀତିରେ ଚମକ୍ ଆଣିପାରେ କିନ୍ତୁ ଦୀର୍ଘସ୍ଥାୟୀ ଉନ୍ନୟନ ଓ ନିଯୁକ୍ତି ସୁଯୋଗ ପାଇଁ କୃଷି ଓ ଶିଳ୍ପ ହିଁ ଏକମାତ୍ର ଆଶା । ଓଡ଼ିଶା 'ବିମାରୁ' ପ୍ରଦେଶ ଗୁଡ଼ିକ ସହିତ ତୁଳନା ହେବାରେ ଦ୍ୱିମତର ଅବକାଶ ନାହିଁ । ଓଡ଼ିଶାର ବେଶୀଭାଗ ଗ୍ରାମାଞ୍ଚଳ ସ୍କୁଲ କିମ୍ବା ହସ୍‌ପିଟାଲରେ ସମାନ୍ତରାଳ ଦୃଶ୍ୟପଟ ଦେଖାଯାଏ । କଳାହାଣ୍ଡି, ଫୁଲବାଣୀ, କୋରାପୁଟ ପ୍ରଭୃତି ଜିଲ୍ଲାରେ ଡାକ୍ତର, ଅଧ୍ୟାପକ, ଇଂଜିନିୟର ପ୍ରଭୃତି ଭୁବନେଶ୍ୱରରେ ବେଶୀ ସମୟ ଅତିବାହିତ କରନ୍ତି । ରାଜ୍ୟରେ ଜଳସେଚନ, ବିଦ୍ୟୁତ ବିତରଣ, କୃଷି ଏବଂ ଶିଳ୍ପକ୍ଷେତ୍ରର ଅବସ୍ଥା ନୈରାଶ୍ୟଜନକ । ତେଣୁ ଓଡ଼ିଶାବାସୀ ପ୍ରଶ୍ନ କରନ୍ତୁ କର୍ତ୍ତୃପକ୍ଷଙ୍କୁ ଏକବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଏପର୍ଯ୍ୟନ୍ତ ଏସବୁ ଦିଗରେ କେତେ ପ୍ରଗତି ହୋଇଛି ? ଭିତ୍ତିଭୂମି ଯଥା ରାସ୍ତାଘାଟ, ବନ୍ଦର, ନୂତନ ରେଲଲାଇନ, ବିମାନବନ୍ଦର ଓ ଟେଲିଯୋଗାଯୋଗ କ୍ଷେତ୍ରରେ କିଭଳି କାର୍ଯ୍ୟ ହୋଇଛି ? ବେଳେବେଳେ ଖବର ପ୍ରକାଶ ପାଏ ଯେ ସରକାରୀ ପ୍ରତିନିଧି ଦଳ ଜ୍ଞାନ ଆହରଣ ପାଇଁ ପାଶ୍ଚାତ୍ୟ ଦେଶକୁ ଗସ୍ତରେ ଯାଆନ୍ତି । ତେବେ ଏତେ ଦୂରକୁ ଯିବା ଅପେକ୍ଷା ପଡ଼ୋଶୀ ରାଷ୍ଟ୍ର ଚୀନ୍‌କୁ ଯାଆନ୍ତୁ । ଦେଖନ୍ତୁ ଭିତ୍ତିଭୂମିର ସୁଚିନ୍ତିତ ଯୋଜନା, ପ୍ରତିଶ୍ରୁତିବଦ୍ଧତା ଓ ସ୍ୱାଭିମାନ ଯୋଗୁ ଚୀନ କେବଳ ଅଲମ୍ପିକ ୨୦୦୮ ନୁହେଁ, ଏକ୍ସପୋ ସାଂଘାଇ ୨୦୧୦ ଭଳି ମେଗା ଇଭେଣ୍ଟ ପାଇଁ ବି ନିଜକୁ ପ୍ରସ୍ତୁତି କରିଛି ।

ଓଡ଼ିଶାରେ ସରକାରୀ ଦଳ, କର୍ମଚାରୀ ଏଭଳି କି ମୁଖ୍ୟମନ୍ତ୍ରୀ ରାଜ୍ୟରେ ଦୁର୍ନୀତି, ହିଂସା ଅନ୍ୟ କେତୋଟି ରାଜ୍ୟ ତୁଳନାରେ କମ୍ ବୋଲି ଗର୍ବିତ । ଏଭଳି ନେଗେଟିଭ୍ ସୂଚୀରେ ନିଜକୁ ତୁଳନା କରିବା ଏବଂ ଗର୍ବିତ ହେବା ହାସ୍ୟାସ୍ପଦ ।

ଓଡ଼ିଶାରେ ୪ ଲକ୍ଷ କୋଟି ପୁଞ୍ଜି ବିନିଯୋଗର ସମ୍ଭାବନା ବିଷୟରେ କର୍ତ୍ତୃପକ୍ଷ ଡ଼ିଣ୍ଡିମ ପିଟୁଥିଲା ବେଳେ, ବିଦେଶୀଙ୍କ ଆଖିରେ ଓଡ଼ିଆ 'ବିମାରୁ' ରାଜ୍ୟରେ ପରିଗଣିତ ହେବା ଚିନ୍ତାର ବିଷୟ ।



# ବ୍ଲାକ୍‌ବେରୀ ଓ ଟେକ୍ନୋଲୋଜି

ବ୍ଲାକବେରୀ ହେଉଛି ମୋବାଇଲ ଫୋନ୍ ଓ କମ୍ପ୍ୟୁଟରର ସମ୍ମିଶ୍ରଣର ଏକ ଉପକରଣ । ଇଣ୍ଟରନେଟ୍‌ରୁ ଅବିରତ ସୂଚନା ସହ ଫୋନ୍ ସହିତ ଯୋଗାଯୋଗ କରିବାରେ ଅପୂର୍ବ ସୁବିଧା ଏଥିରେ ରହିଛି । ବର୍ତ୍ତମାନ ଆମେରିକାର ସବୁ ଏକ୍‌ଜିକ୍ୟୁଟିଭ୍‌ଙ୍କ ହାତରେ ବ୍ଲାକ୍‌ବେରୀ । କିଛିଦିନ ଭିତରେ ଏହା ଭାରତବର୍ଷରେ ମଧ୍ୟ ଲୋକପ୍ରିୟତା ହାସଲ କରିବାର ସମ୍ଭାବନା ରହିଛି ।

କିଛିଦିନ ତଳେ ନ୍ୟୁୟର୍କ ନଗରୀରେ ୫୦ ଲକ୍ଷ ବ୍ଲାକ୍‌ବେରୀ ଉପଭୋକ୍ତାଙ୍କୁ ଏହା ଉପରେ ସମ୍ପୂର୍ଣ୍ଣ ନିର୍ଭର କରିବାର କୁଫଳ ଭୋଗିବାକୁ ପଡ଼ିଥିଲା । ଯେତେବେଳେ ଏହାର ଇ-ମେଲ୍ ସିଷ୍ଟମ କିଛି ଘଣ୍ଟାପାଇଁ ଅକାମି ହୋଇଗଲା, ସେତେବେଳେ ଏହାର ପ୍ରଭାବ ଆମେରିକା ତଥା ବିଶ୍ୱର ଅର୍ଥନୈତିକ କାର୍ଯ୍ୟକଳାପ ଓ ବ୍ୟବସାୟ ଉପରେ ମଧ୍ୟ ପଡ଼ିଲା ।

ଏବେ ସମାଜତତ୍ତ୍ୱବିତମାନେ କହିଲେଣି ଯେ ବ୍ଲାକବେରୀ ପ୍ରତି ଆସକ୍ତି ଓ ଏହା ଉପରେ ନିର୍ଭରଶୀଳତା ବ୍ୟବହାରକାରୀଙ୍କ ସାମାଜିକ ଜୀବନକୁ ପ୍ରଭାବିତ କରୁଛି । ସାମାଜିକ ଜୀବନ ଉପରେ 'ଟେକ୍ନୋଲୋଜି'ର ହସ୍ତକ୍ଷେପ କିଛି ନୂଆ କଥା ନୁହେଁ । ସବୁଠାରୁ ସହଜ ଉଦାହରଣ ହେଲା, ଭାରତରେ ଟିଭିର ଅଭ୍ୟୁଦୟ । ଏହା ସମସ୍ତେ ଜାଣନ୍ତି ଯେ ଟିଭି ଦ୍ୱାରା ଆସକ୍ତ ଭାରତୀୟ ପାରଂପରିକ ପାରିବାରିକ ଜୀବନଶୈଳୀରେ ବହୁ ପରିବର୍ତ୍ତନ ଆସିଛି । ଆମେରିକାର କିଛି ବୁଦ୍ଧିଜୀବୀ ଏବେ ଭାବୁଛନ୍ତି ଯେ ବ୍ଲାକବେରୀକୁ ବର୍ଜନ କରିବା, ନିଶା ବର୍ଜନ କରିବା ଠାରୁ ମଧ୍ୟ କଠିନ । ଏହା ସତ୍ତ୍ୱେ ବି ଆସକ୍ତି କମୁନାହିଁ ଏବଂ ଉନ୍ନତରୁ ଉନ୍ନତତର ଟେକ୍ନୋଲଜି ବ୍ୟବହାର କରିବାର ନିଶା ପାଶ୍ଚାତ୍ୟ ଲୋକଙ୍କୁ ଘାରିଛି ।

ଟେକ୍ନୋଲଜି ପ୍ରତି ଗଭୀର ଭାବେ ଆକର୍ଷିତ ଆମେରିକାରେ ନୂତନ ପ୍ରଯୁକ୍ତି ବିଦ୍ୟାର ବିକାଶ ପାଇଁ ବହୁ ପରୀକ୍ଷା ଓ ପ୍ରୟାସ ଚାଲିଛି । ସେଠାକାର ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ଗବେଷଣା ଅନୁଷ୍ଠାନଗୁଡ଼ିକର ବୈଜ୍ଞାନିକମାନେ ନାନୋ ଏବଂ ୱାଏର୍‌ଲେସ୍ ଟେକ୍ନୋଲଜି ଉପରେ ଗବେଷଣା କରି ଚାଲିଛନ୍ତି । ଏହାର ସଫଳ ପ୍ରୟୋଗ ସାଧାରଣ ତଥା ବାଣିଜ୍ୟ ବ୍ୟବସାୟରେ ଅଭୂତପୂର୍ବ ପରିବର୍ତ୍ତନର ସମ୍ଭାବନା ଆଣିବ । ନାନୋ ଟେକ୍ନୋଲଜି ମାଧ୍ୟମରେ

ଯେ କୌଣସି ଉପକରଣର କ୍ଷମତା ଦକ୍ଷତାକୁ ଅଧିକ ଶକ୍ତୀଶାଳୀ କରିବା ସମ୍ଭବ ହେବ ଏବଂ ଦିନେ ନା ଦିନେ ଏହା ବିଭିନ୍ନ କ୍ଷେତ୍ରରେ ମଣିଷର ଜୀବନକୁ ପ୍ରଭାବିତ କରିବ ।

ଟେକ୍ନୋଲଜିର ସବୁଠାରୁ ସଫଳ ପ୍ରୟୋଗ ଏବେ ହୋଇପାରିଛି ଟେଲି ଯୋଗାଯୋଗ କ୍ଷେତ୍ରରେ । ବର୍ତ୍ତମାନ 'ପର୍ସନାଲ କଂପ୍ୟୁଟର'ର ସ୍ଥାନ ମୋବାଇଲ ନେବାର ସବୁ ସମ୍ଭାବନା ଦେଖାଦେଲାଣି । ସବୁ ପ୍ରକାରର ସମ୍ବାଦ, ସୂଚନା, ଆମୋଦ ପ୍ରମୋଦ, ମୋବାଇଲ ଫୋନ୍‌ରେ ଉପଲବ୍ଧ ହେଲାଣି । ବ୍ୟସ୍ତତା ବହୁଳ ଜୀବନରେ ସମୟର ଅଭାବକୁ ଲକ୍ଷ୍ୟ ରଖି 'ସୋନି' କମ୍ପାନି ଅନ୍‌ଲାଇନ ଜରିଆରେ ବିଗତ ଦିନର ଜନପ୍ରିୟ ଟିଭି ସିରିଆଲ ଏବଂ ସିନେମାର ସଂକ୍ଷିପ୍ତ ସ୍ମରଣୀୟ ଅଂଶ ଗୁଡ଼ିକର ପ୍ରସାରଣ କରିବାର ଯୋଜନା କରୁଛି । ଭାବନ୍ତୁ 'ମୋଗଲ-ଇ ଆଜାମ୍' 'ଶ୍ରୀ ୪୨୦' କିମ୍ବା 'ପଡ଼ୋସନ୍'ର ସବୁଠାରୁ ପ୍ରିୟ ଦୃଶ୍ୟ ଆମ ମୋବାଇଲର କ୍ଷୁଦ୍ର ପରଦାରେ ଦେଖିପାରିବା ବା ପ୍ରିୟ ଗୀତ ଶୁଣି ପାରିବା, ଭାରତରେ ରହି ନ୍ୟୁୟର୍କ କିମ୍ବା ଟୋକିଓ ଷ୍ଟକ୍‌ମାର୍କେଟର ସଦ୍ୟତମ ତଥ୍ୟ ଜାଣିପାରିବା, କ୍ରିକେଟ ମ୍ୟାଚ୍‌ର ଆନନ୍ଦ ସ୍କ୍ରିନ୍‌ରେ ଖେଳ ଦେଖି ଉଠାଇ ପାରିବା,ଆଫ୍ରିକାରେ ସଫାରି ଭ୍ରମଣ କରୁଥିବା ବନ୍ଧୁ ତାଙ୍କର ସମସ୍ତ ଅନୁଭୂତି ଆମକୁ ମୋବାଇଲ ଜରିଆରେ ଦୃଶ୍ୟ ସହ ପ୍ରସାରଣ କରିବାରେ ସକ୍ଷମ ହେବେ । ଦୁଇ, ତିନି ବର୍ଷ ପୂର୍ବେ ଏହା ସମ୍ଭବ ଥିଲା କି ?

ନିକଟରେ ବଜାରକୁ ଆଇଫୋନ୍ ଆସିଛି । ଏହା ଏକ ଯୁଗାନ୍ତକାରୀ ଉପକରଣ । କମ୍ପ୍ୟୁଟର, ଇଣ୍ଟରନେଟ୍ ମୋବାଇଲ୍, ଆଇପଡ୍ ପ୍ରଭୃତିର ଏକ ଅଦ୍ଭୁତ ସମ୍ମିଶ୍ରଣ । ଏହାକୁ କିଣିବା ପାଇଁ ଆମେରିକାର ଲୋକେ ଧାଡ଼ିରେ ଛିଡ଼ା ହେଉଥିବାର ଦେଖିବାକୁ ମିଳିଥିଲା ।

ସଂକ୍ଷେପରେ କହିବାକୁ ଗଲେ ଟେକ୍ନୋଲଜି ମାଧ୍ୟମରେ ସମଗ୍ର ବିଶ୍ୱ ସହିତ ନିଜକୁ ଏବଂ ନିଜ ସହିତ ସମଗ୍ର ବିଶ୍ୱକୁ ସାମିଲ କରିବାର ସୁଯୋଗ ଆସିଛି । ଟେକ୍ନୋଲଜି ଜୀବନକୁ ସୁଖମୟ କରିଛି । କିନ୍ତୁ 'ବ୍ଲାକବେରୀ ବ୍ଲାକ୍ ଆଉଟ୍' ଭଳି ଅପ୍ରତ୍ୟାଶିତ ଅଘଟନ ବି ଘଟୁଛି । ତେବେ ଏ ସବୁର ଦୂରିକରଣ ପାଇଁ ପ୍ରଚେଷ୍ଟା ମଧ୍ୟ ଚାଲିଛି ।

ଏସବୁ କଥା ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଲା ଯେ ଆମ ରାଷ୍ଟ୍ରରେ ଟେକ୍ନୋଲଜିର ପରିବର୍ତ୍ତନ ପ୍ରତି ଲୋକେ ଏତେ ଆଗ୍ରହୀ ନୁହନ୍ତି । ଆମେରିକାର ଶିକ୍ଷାନୁଷ୍ଠାନ ଗୁଡ଼ିକରେ ଗଣିତ ଓ ବିଜ୍ଞାନର ଗୁଣାତ୍ମକ ଶିକ୍ଷା ଉପରେ ଅଧିକ ଜୋର ଦିଆଯାଉଛି । ଆମ ଦେଶର ନୀତି ନିର୍ଦ୍ଧାରକମାନେ ଏ ଦିଗରେ ମଧ୍ୟ ପ୍ରୟାସ କରିବା ଉଚିତ । ଆମେ ବର୍ତ୍ତମାନ ଯେଉଁ ପରିସ୍ଥିତିରେ ଦଣ୍ଡାୟମାନ ସେ ପରିସ୍ଥିତିରେ ତିଷ୍ଠିବାକୁ ହେଲେ ଆମକୁ ଶହେ ମିଟର ରେସ୍ ଦୌଡ଼ର କ୍ଷିପ୍ରତା ଦେଖାଇବା ଜରୁରୀ । ସେ ରେସ୍‌ରେ ଅନ୍ୟମାନଙ୍କ ସହିତ ସମକକ୍ଷ ହୋଇ ଜିତିବାକୁ ହେଲେ ଆମକୁ ବି ଟେକ୍‌ନୋଲଜିମନସ୍କ ହେବାକୁ ପଡ଼ିବ । ନିଜ ଉପରେ କିଛିଟା ନିୟନ୍ତ୍ରଣ ରଖି ଟେକ୍ନୋଲଜିକୁ ଉପଯୋଗ କରି ଜାଣିଲେ ଏହା ଆମ ପ୍ରତି ବରଦାନ ଭଳି ହେବ ।



# ବିଦ୍ୟାର୍ଥୀ ଓ ଇଂରାଜୀ ଭାଷା

ଆମେରିକାର ରକ୍ଷଣଶୀଳ ବ୍ରିଗ୍‌ହାମ ବିଶ୍ୱବିଦ୍ୟାଳୟରେ ବର୍ତ୍ତମାନ ଏକ ବିରଳ ପ୍ରତିବାଦର ସ୍ୱର ଶୁଣିବାକୁ ମିଳୁଛି । ବିଶ୍ୱବିଦ୍ୟାଳୟର ପ୍ରାୟ ୧୮୦୦୦ ଛାତ୍ରଛାତ୍ରୀ, ଶିକ୍ଷକ ଓ ପ୍ରାକ୍ତନ ଛାତ୍ର ଆମେରିକାର ଉପରାଷ୍ଟ୍ରପତି ଡ଼ିକ୍ ଚେନିଙ୍କୁ ମୁଖ୍ୟ ଅତିଥି ଓ ବକ୍ତା ହିସାବରେ ପରିଚାଳକ ଗୋଷ୍ଠୀର ନିମନ୍ତ୍ରଣ ନିଷ୍ପତ୍ତିକୁ ବିରୋଧ କରୁଛନ୍ତି । ସେମାନଙ୍କର ପ୍ରତିବାଦ ବୁଶ୍ ପ୍ରଶାସନର ଇରାକ୍ ଏବଂ ଅନ୍ୟାନ୍ୟ ନୀତି ବିରୁଦ୍ଧରେ । ଆପତ୍ତି ମଧ୍ୟ ଅଛି ଯେ ଡ଼ିକ୍ ଚେନିଙ୍କ ନୈତିକ ଆଚରଣ ସନ୍ଦେହଜନକ ଏବଂ ବିଶ୍ୱବିଦ୍ୟାଳୟର ଭାବମୂର୍ତ୍ତି ପ୍ରତି ଏକ ଆହ୍ୱାନ । ଏ ବିଶ୍ୱବିଦ୍ୟାଳୟରେ ସାଧୁତା, ବିନମ୍ରତା ଓ ନୈତିକତାକୁ ପ୍ରାଧାନ୍ୟ ଦିଆଯାଏ । ତେଣୁ ଘଟଣାଟି ସୂଚିତ କରୁଛି ଯେ ନିଜ ମତ ନିର୍ଭୟରେ ପ୍ରକାଶ କରିବାର ସ୍ୱାଧୀନ ଓ ଗଣତାନ୍ତ୍ରିକ ପଦ୍ଧତି ଆମେରିକାରେ ଦୃଢ଼ ।

ଏକଥା ଲେଖିବାର ଉଦ୍ଦେଶ୍ୟ ହେଲା ଯେ ଆମେରିକାର ବେଶୀ ଭାଗ ଉଚ୍ଚ ଶିକ୍ଷାନୁଷ୍ଠାନରେ ଛାତ୍ର ଆନ୍ଦୋଳନ ଓ ପ୍ରତିବାଦ, ସାଂପ୍ରତିକ ସମସ୍ୟା, ମୌଳିକ ସତ୍ୟ ଓ ନିୟମ ଉପରେ ଆଧାରିତ । ଆନୁଷ୍ଠାନିକ ଚିନ୍ତା, ଆଲୋଚନା ଓ ତର୍କ ସମାଜର ବୃହତ୍ତର ହିତକୁ ଦୃଷ୍ଟିରେ ରଖିଥାଏ ।

କିନ୍ତୁ ଆମ ରାଜ୍ୟରେ ଦୃଶ୍ୟକ୍ରମ ଭିନ୍ନ । କପି କରିବାରେ ଅଧିକାରର ସ୍ୱୀକୃତି ପାଇଁ ଜାତୀୟ ରାଜପଥ ଅବରୋଧ, ସିନେମା ଟିକେଟ୍‌ରେ ଆଡ଼୍‌ଭାନ୍‌ସ ବୁକିଂ ପାଇଁ ବିଦ୍ୟାର୍ଥୀଙ୍କୁ ଅଗ୍ରାଧିକାର କିମ୍ବା ଢ଼ାବାରେ ଦେୟ ପରିମାଣ ନେଇ ବିବାଦ ଓ ଭଙ୍ଗାରୁଜା ଛାତ୍ର ଆନ୍ଦୋଳନର ମୁଖ୍ୟ ରୂପ । ଏସବୁ ପ୍ରମାଣିତ କରୁଛି ଯେ ରାଜ୍ୟର ବିଦ୍ୟାର୍ଥୀମାନେ ଦିଶାହରା । ଆକାଂକ୍ଷା ଏବଂ ବୌଦ୍ଧିକ ପରିବେଶରୁ ବଞ୍ଚିତ । ଏହାର ଉତ୍‌କ୍ରମଣ ବା ବିପରୀତ ଗତି ପାଇଁ ଦରକାର ରୋଲ ମଡ଼େଲ; ଯେଉଁମାନେ ଅନ୍ୟମାନଙ୍କୁ ଅନୁପ୍ରାଣୀତ କରିପାରିବେ । ସମାଜରେ ପରିବର୍ତ୍ତନ ପାଇଁ ସେଲିବ୍ରେଟି ବା ଖ୍ୟାତିସଂପନ୍ନ ବ୍ୟକ୍ତିଙ୍କ ଭୂମିକା ସୀମିତ । ସେ ସିନେମା ଅଭିନେତା ବା କ୍ରିକେଟ ଖେଳାଳି ହୁଅନ୍ତୁ ନା କାହିଁକି ? ଏ କ୍ଷେତ୍ରରେ ରାଜନୈତିକ ଦଳ ଓ ନେତାମାନଙ୍କର ଭୂମିକା ରହିଛି । ସମାଜରେ ଗଠନମୂଳକ କାର୍ଯ୍ୟ ପାଇଁ ଛାତ୍ରଶକ୍ତିର ବିନିଯୋଗରେ ରାଜନୈତିକ ଦଳମାନଙ୍କର ବିଶେଷ ଦାୟିତ୍ୱ ରହିଛି । ଶିକ୍ଷକ, ପରିବାର ଓ ଗଣମାଧ୍ୟମର ଭୂମିକାକୁ ମଧ୍ୟ ଉପେକ୍ଷା କରି ହେବ ନାହିଁ ।

ଜଗତୀକରଣର ପ୍ରତିଦ୍ୱନ୍ଦ୍ୱିତାରେ ଇଂରାଜୀ ଭାଷାର ମାହାତ୍ମ୍ୟ ଓ ଗୁରୁତ୍ୱ ସବୁ ଦେଶର ଲୋକେ ହୃଦୟଙ୍ଗମ କଲେଣି । ଗତ ପାଞ୍ଚ ବର୍ଷ ଭିତରେ ବିଶ୍ୱର ସବୁ ପ୍ରସିଦ୍ଧ ବିଜ୍‌ନେସ୍ ସ୍କୁଲ ଓ ବିଶ୍ୱବିଦ୍ୟାଳୟରେ ଇଂରାଜୀକୁ ଶିକ୍ଷାର ମାଧ୍ୟମ ଭାବେ ଗ୍ରହଣ କରିବାରେ ଅବିରତ ଉଦ୍ୟମ ଚାଲିଛି । ଏ ପ୍ରଚେଷ୍ଟା ବିଶେଷ ଭାବେ ଆନ୍ତର୍ଜାତିକ ବିଦ୍ୟାର୍ଥୀଙ୍କୁ ଆକର୍ଷିତ କରିବା ପାଇଁ ଏବଂ ଜଗତୀକରଣ ପ୍ରକ୍ରିୟାରେ ପ୍ରତିଯୋଗୀ ହେବା ପାଇଁ । ଇଂରାଜୀ ବର୍ତ୍ତମାନ ଆନ୍ତର୍ଜାତୀୟ ଭାଷା । ଏହା ଶିକ୍ଷା ମାଧ୍ୟମ ହିସାବରେ ତ୍ରୟୋଦଶ ଶତାବ୍ଦୀର ଲାଟିନ୍ ଭାଷାର ସ୍ଥାନ ନେବାକୁ ଯାଉଛି । ଆଧୁନିକ ବିଜ୍ଞାନ, ସୂଚନା, ପ୍ରଯୁକ୍ତି, କମ୍ପ୍ୟୁଟର ପ୍ରଭୃତି କ୍ଷେତ୍ରରେ ଏହାର ଉପଯୋଗିତା ବର୍ତ୍ତମାନ ସ୍ୱୀକୃତ । ଇଂରାଜୀ ଭାଷାର ଲୋକପ୍ରିୟତା ଓ ଆବଶ୍ୟକତା ଯୋଗୁ ଗୋଟିଏ ଦେଶରୁ ଅନ୍ୟ ଦେଶକୁ ଗମନ ଓ ଶିକ୍ଷାଦାନର ସୁବିଧା ଓ ସୁଯୋଗର ଦିଗନ୍ତ ଆଶାତୀତ ଭାବେ ବୃଦ୍ଧି ପାଇଛି । ଉଚ୍ଚ ଶିକ୍ଷାନୁଷ୍ଠାନ ଗୁଡ଼ିକରେ ଇଂରାଜୀ ଭାଷାର ପ୍ରୟୋଗକୁ ଉପେକ୍ଷା କରିହେବ ନାହିଁ । ଗତ ଦଶନ୍ଧିରେ ଭାରତୀୟ ଅର୍ଥନୀତିର ପ୍ରଗତିରେ ସେବା କ୍ଷେତ୍ରରେ ଅବଦାନ ଜିଡ଼ିପି ବୃଦ୍ଧିରେ ସ୍ୱୀକାର୍ଯ୍ୟ । ସେବା କ୍ଷେତ୍ରରେ ଭାରତର ଉତ୍କୃଷ୍ଟତା ଇଂରାଜୀ ଭାଷାରେ ଦକ୍ଷତା ଥିବା ଭାରତୀୟଙ୍କ ଯୋଗୁ । କିନ୍ତୁ ଏ ସୁବିଧା ବେଶୀ ଦିନ ନ ରହିପାରେ । କାରଣ ଚୀନ୍, ଭିଏତ୍‌ନାମ ଓ ପୂର୍ବ ୟୁରୋପ ରାଷ୍ଟ୍ରଗୁଡ଼ିକ ଏ ଦିଗରେ କ୍ଷୀପ୍ର ପଦକ୍ଷେପ ନେଲେଣି । ଆଉ କିଛିବର୍ଷ ପରେ ସେମାନେ ଆମର ଶକ୍ତିଶାଳୀ ପ୍ରତିଦ୍ୱନ୍ଦ୍ୱୀ ହେବେ । ବର୍ତମାନ ଆଉଟ୍‌ସୋର୍ସିଂର ବ୍ୟାବସାୟିକ ପରିମାଣ ୨୩୮ ବିଲିୟନ ଡ଼ଲାର । ସବୁ ବିକଶିତ ରାଷ୍ଟ୍ର ଚାହାନ୍ତି ସେଥିରୁ କିଛି ଅଂଶ ।

ବର୍ତ୍ତମାନ ପ୍ରତିଯୋଗିତା ରେଭେନ୍‌ସା କଲେଜ, ବିଜେବି କଲେଜ, କିମ୍ବା ରମାଦେବୀ କଲେଜ ସହିତ ନୁହେଁ । କିମ୍ବା ଦିଲ୍ଲୀ, କର୍ଣ୍ଣାଟକ, ମହାରାଷ୍ଟ୍ର ଏବଂ ତାମିଲନାଡୁର ଶିକ୍ଷାନୁଷ୍ଠାନ ସହିତ ନୁହେଁ । ବରଂ ଆମେରିକା , ବ୍ରିଟେନ୍, ଫ୍ରାନସ୍ ଓ ଜର୍ମାନୀର ସର୍ବୋତ୍କୃଷ୍ଟ ଶିକ୍ଷା ଅନୁଷ୍ଠାନ ଗୁଡ଼ିକ ସହିତ । ଜଗତୀକରଣର ଏ ସ୍ରୋତରେ ସାମିଲ ହେବାକୁ ପଡ଼ିଲେ ବାସ୍ତବତାକୁ ଗ୍ରହଣ କରିବାକୁ ପଡ଼ିବ । ଆମେରିକାରେ ବର୍ତ୍ତମାନ ଶିକ୍ଷାଦାନର ବ୍ୟବସାୟୀକରଣ ବିରୁଦ୍ଧରେ ସ୍ୱର ଉଠିଲାଣି । ପରିବର୍ତ୍ତେ ଶିକ୍ଷାଦାନର ଗୁଣମାନର ଆବଶ୍ୟକତା ସମସ୍ତେ ଉପଲବ୍ଧି କଲେଣି ।

ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା କରାଯାଉ । ଏହାର ପୃଷ୍ଠପୋଷକତା ଓ ଜନପ୍ରିୟତା ନିର୍ଭର କରେ ପରିବାର ଓ ଯୁବ ସମାଜ ଉପରେ । ଏହାର ଅର୍ଥ ନୁହେଁ ଯେ ପୃଥିବୀର ପ୍ରଗତି ଯାତ୍ରାରୁ ନିଜକୁ ବିଚ୍ଛିନ୍ନ ଓ ପୃଥକ କରି ରଖିବା ।



# ପରିବର୍ତ୍ତନଶୀଳ ଆମେରିକା

ଆଜିକି କୋଡ଼ିଏ ବର୍ଷ ତଳେ ମୁଁ ଯେତେବେଳେ ଜଣେ କୂଟନୀତିଜ୍ଞ ଭାବେ ଆମେରିକାରେ ଅବସ୍ଥାପିତ ଥିଲି, ଭାରତୀୟଙ୍କ ସଂଖ୍ୟା ଅପେକ୍ଷାକୃତ କମ୍ ଥିଲା । ସେମାନେ ଡ଼ାକ୍ତର, ଇଂଜିନିୟର, ବୈଜ୍ଞାନିକ ଓ ପ୍ରଫେସର ହିସାବରେ ବିଭିନ୍ନ କ୍ଷେତ୍ରରେ କାମ କରୁଥିଲେ । ଷାଠିଏ ଦଶକ ପର୍ଯ୍ୟନ୍ତ ଏସିଆ ମହାଦେଶରୁ ବହୁ ସଂଖ୍ୟାରେ ଇମିଗ୍ରାଣ୍ଟ ବା ଦେଶାନ୍ତକାରୀଙ୍କ ଆସିବାରେ କଟକଣା ଥିଲା । ସେତେବେଳେ ଅଧିକାଂଶ ଭାରତୀୟଙ୍କର ଅଭିଯୋଗ ଥିଲା ସବୁ ଦକ୍ଷତା ଓ ଉତ୍କର୍ଷତା ସତ୍ତ୍ୱେ ସେମାନେ ନିଜ ପେଷା କିମ୍ବା ଅନୁଷ୍ଠାନରେ ଶୀର୍ଷରେ ପଂହଚିବାରେ ବହୁ ବାଧାବିଘ୍ନର ସମ୍ମୁଖୀନ ହେଉଛନ୍ତି । ଅନ୍ୟ ଅର୍ଥରେ ପକ୍ଷପାତିତା, ପାତର ଅନ୍ତର ଥିଲା । କିନ୍ତୁ ସେ ଦୃଶ୍ୟକ୍ରମରେ ବର୍ତ୍ତମାନ ବହୁ ପରିବର୍ତ୍ତନ ଆସିଛି । ଭାରତୀୟ ମାନେ ବିଭିନ୍ନ କ୍ଷେତ୍ରରେ ସଫଳତା ହାସଲ କରି ଶୀର୍ଷରେ ପହଞ୍ଚିଛନ୍ତି । ନିଜର ନିପୁଣତା ଓ ଦକ୍ଷତାରେ ପ୍ରମାଣ କରିଛନ୍ତି ଯେ ସେମାନେ ବିଶ୍ୱର ଯେ କୌଣସି କାମ ପାଇଁ ଯୋଗ୍ୟ । ଏ ଭଳି ଭାବମୂର୍ତ୍ତି ସୃଷ୍ଟିକରିବାରେ ଭାରତୀୟମାନଙ୍କ କଠିନ ପରିଶ୍ରମ, ନିଷ୍ଠା, ଦକ୍ଷତା ଏବଂ ଆଚରଣର ବିଶେଷ ଅବଦାନ ରହିଛି ।

ଆମେରିକାରେ ବର୍ତ୍ତମାନ ଭାରତୀୟଙ୍କ ସଂଖ୍ୟା ପ୍ରାୟ ୧୮ ଲକ୍ଷ । ସେମାନଙ୍କର ଉପସ୍ଥିତି ବିଭିନ୍ନ ପେଷାରେ, ବୃତ୍ତିରେ ଉପଲବ୍ଧ କରିହୁଏ । ଡ଼ାକ୍ତର, ଇଂଜିନିୟର, ବୈଜ୍ଞାନିକମାନଙ୍କ ସହିତ ଏବେ ଭାରତୀୟମାନଙ୍କୁ ଦେଖିବାକୁ ମିଳୁଛି ଗଣମାଧ୍ୟମ, ଓକିଲାତି, ଆଇ.ଟି ବିଶେଷଜ୍ଞ, ବ୍ୟବସାୟିକ, ବ୍ୟାଙ୍କ ଏବଂ ଅନ୍ୟାନ୍ୟ ଅର୍ଥ ସମ୍ବନ୍ଧୀୟ ଅନୁଷ୍ଠାନ ; ଏଭଳିକି ଆମୋଦ ପ୍ରମୋଦ କ୍ଷେତ୍ରରେ ମଧ୍ୟ ୱାଲଷ୍ଟ୍ରୀଟ୍ ଯାହା କି ଆମେରିକା ଅର୍ଥନୀତିକୁ ବିଶେଷ ଭାବେ ପ୍ରଭାବିତ କରେ, ସେଠାରେ ବହୁ ଭାରତୀୟ ବିଭିନ୍ନ ଅନୁଷ୍ଠାନର ବିଭିନ୍ନ ସ୍ତରରେ ସଫଳତାର ସହିତ ନିଜର ଦକ୍ଷତା ପ୍ରମାଣିତ କରୁଛନ୍ତି । ଆମେରିକାର ସବୁ ପ୍ରାନ୍ତରେ ମୋଟେଲ ବ୍ୟବସାୟରେ ଭାରତୀୟଙ୍କ ଆଧିପତ୍ୟ ରହିଛି । ନ୍ୟୁର୍ୟକ ପ୍ରଭୃତି ସହରରେ ଭାରତୀୟ ରେଷ୍ଟୋରାଁ ଲୋକପ୍ରିୟ । ଆମେରିକାର ବଡ଼ ବଡ଼ ସହର ମାନଙ୍କରେ ଭାରତୀୟ ଟ୍ୟାକ୍ସି ଡ୍ରାଇଭର, ଖୁଚୁରା ବ୍ୟବସାୟୀଙ୍କ ସଂଖ୍ୟା ମଧ୍ୟ ଆଶାତୀତ ଭାବେ ବୃଦ୍ଧି ପାଇଛି । ଡ଼ିପାର୍ଟମେଣ୍ଟାଲ ଷ୍ଟୋର ମାନଙ୍କରେ ଭାରତରେ ପ୍ରସ୍ତୁତ ହୋଇଥିବା ବହୁ ଜିନିଷ ବିକ୍ରୀ ହେଉଛି । ଏବର୍ଷ ଆଲ୍‌ଫୋଁସୋ ଆମ୍ବ ମଧ୍ୟ ବଜାରକୁ ଆସିଛି ।

ସଂଜୟ ମାଲାକାର ବର୍ତ୍ତମାନ ଜଣେ ସେଲିବ୍ରିଟି । ସେ 'ଆମେରିକାନ ଆଉଡ଼ଲ' ('ଜୀ' ଟି.ଭିର ସାରେଗାମା ପ୍ରୋଗାମ ସଦୃଶ) ପ୍ରତିଯୋଗୀତାରେ ଅଂଶଗ୍ରହଣ କରି ବହୁ ଦର୍ଶକଙ୍କର ପ୍ରିୟପାତ୍ର ହୋଇଛନ୍ତି । 'ଆମେରିକାନ ଆଇଡ଼ଲ' ଟି.ଭିରେ ଦେଶର ଜନପ୍ରିୟ ପ୍ରୋଗ୍ରାମ୍ । ପ୍ରାୟ ୨୮ ମିଲିୟନ ଲୋକେ ସେ ପ୍ରୋଗ୍ରାମ ଦେଖନ୍ତି । ଜନପ୍ରିୟତା ଯୋଗୁ ରାଷ୍ଟ୍ରପତି ବୁଶ ଏ ପ୍ରୋଗ୍ରାମ ମାଧମରେ ଅଭାବଗ୍ରସ୍ତ ଓ ବ୍ୟଥିତ ଲୋକଙ୍କୁ ସ୍ୱଇଛାରେ ଦାନ ବା ଚାରିଟୀ ପାଇଁ ଆମେରିକାବାସୀଙ୍କୁ ଅନୁରୋଧ କରିଥିଲେ । କେତେକ ଟି.ଭି ସିରିଏଲରେ ମଧ ବର୍ତ୍ତମାନ ଭାରତୀୟ ଅଭିନେତାଙ୍କୁ ଦେଖିବାକୁ ମିଳୁଛି । ଗଣମାଧମରେ ଭାରତ ଭିତ୍ତିକ ସମ୍ବାଦ ସ୍ଥାନ ପାଉଛି । ସଂକ୍ଷେପରେ ଭାରତୀୟମାନେ ଏବେ ଏ ଦେଶରେ ଦୃଶ୍ୟମାନ । ସ୍ୱଚ୍ଛଳତା ଓ ସଫଳତା ହେତୁ ସେମାନଂକ ମଧରେ ଆତ୍ମବିଶ୍ୱାସ ଆସିଛି । କେତକ ସଫଳ ଭାରତୀୟ ଆମେରିକା ରାଜନୀତିରେ ସକ୍ରୀୟ ଅଂଶ ଗ୍ରହଣ କରିବାର ଇଛା ପ୍ରକାଶ କଲେଣି । ଡ଼ିମୋକ୍ରାଟ ଓ ରିପୁବ୍ଲିକାନ ଦଳର ରାଜନୀତି ସହିତ ସଂପୃକ୍ତ ହେଲେଣି । ଦଳ ଗୁଡ଼ିକର ସମର୍ଥକ ହିସାବରେ ଭୂମିକା ଗ୍ରହଣ କଲେଣି । ଆଗାମୀ ପିଢ଼ୀ ମଧ ପରଂପାରିକ ପେଷା ଯଥା - ଡ଼ାକ୍ତରୀ, ଇଂଜିନିୟରିଂ ପ୍ରଭୃତିରୁ ଦୂରେଇ ଯାଇ ଅନ୍ୟ କ୍ଷେତ୍ରରେ ପାରଦର୍ଶିତା ଦେଖାଇବା ପାଇଁ ଆଗ୍ରହ ପ୍ରକାଶ କଲେଣି । ହୁଏତ ଭବିଷ୍ୟତରେ ଆମୋଦ ପ୍ରମୋଦ ସେଲିବ୍ରିଟି ହେବାର ପ୍ରୟାସ କରିବେ । ଭାରତୀୟ ମାନଙ୍କ ମଧରେ ତାମିଲ, ତେଲୁଗୁ, ମାଲାୟାଲି, କାନାଡ଼ା, ମରାଠୀ, ଗୁଜରାତୀ, ବାଂଲା, ପଞ୍ଜାବୀ ଭାଷୀ ଅଗ୍ରଣୀ ।

ବୁସ୍ ସରକାର ବର୍ତ୍ତମାନ ପ୍ରଚେଷ୍ଟା ଚଳାଇଛନ୍ତି ନୂତନ ଇମିଗ୍ରେସନ ବିଲ୍ ଆଣି ଅବୈଧ ଅନୁପ୍ରବେଶକାରୀଙ୍କ ଦେଶରେ ରହଣିକୁ ଆଇନ୍-ସ୍ୱୀକୃତ କରାଇବା ଏବଂ ଭବିଷ୍ୟତରେ ପାରିବାରିକ ସଂପର୍କ ପରିବର୍ତ୍ତେ ଦକ୍ଷତା, ଶିକ୍ଷା, ଓ ଉପଯୋଗୀତାକୁ ଇମିଗ୍ରେସନ ପାଇଁ ପ୍ରୋତ୍ସାହନ ଦେବା । ଏହା ହେଲେ ଭାରତ ଭଳି ଦେଶର ନାଗରିକମାନେ ଉପକୃତ ହେବେ । ବିଲର ସପକ୍ଷ ଓ ବିପକ୍ଷରେ ଚର୍ଚ୍ଚା ଚାଲିଛି ।

ଏ ପରିପ୍ରେକ୍ଷୀରେ ଅନ୍ୟ ଏକ ପ୍ରକ୍ରିୟା ଦୃଷ୍ଟିଗୋଚର ହୁଏ । ତା ହେଲା ଆମେରିକାବାସୀଙ୍କର ବଡ଼ ସହରରୁ ଛୋଟ ସହର ପ୍ରତି ବାସ ନିମିତ୍ତ ସ୍ଥାନାନ୍ତର ପାଇଁ ଆକୃଷ୍ଟ ହେବା । ଏହାର ରାଜୀନୀତି ଉପରେ ସୁଦୂରପ୍ରସାରୀ ପରିଣାମର ସମ୍ଭାବନା ରହିଛି ।

୧୯୫୦ ମସିହାରେ ଆମେରିକାର ଜନସଂଖ୍ୟା ଥିଲା ୧୫ କୋଟୀ । ବର୍ତ୍ତମାନ ଏହା ବୃଦ୍ଧିପାଇ ୩୦ କୋଟୀ । ଆମେରିକାବାସୀ ସର୍ବଦା ଗତିଶୀଳ । ବାସସ୍ଥାନ ନିମନ୍ତ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଗମନ କରିବା ସାଧାରଣ କଥା । ବୟସ ବୃଦ୍ଧି ସଂଗେ ଅତି ଶୀତଳ ଅଂଚଳରୁ ଉଷ୍ମ ଅଂଚଳ, କିମ୍ବା ଅର୍ଥନୈତିକ କାରଣରୁ ପୂର୍ବ, ମଧ ପଶ୍ଚିମ ଅଂଚଳରୁ ଦକ୍ଷିଣ ଓ ପଶ୍ଚିମ ଅଂଚଳକୁ ଆୟବୃଦ୍ଧି ଓ ନିଯୁକ୍ତି ସୁଯୋଗ ପାଇଁ ସ୍ଥାନାନ୍ତର ହେବା ନୂଆ କଥା ନୁହେଁ ।

କିନ୍ତୁ ସ୍ଥାନାନ୍ତର ପ୍ରକ୍ରିୟାର ଗୋଟିଏ ନୂତନ ପ୍ରବାହର ପ୍ରାରମ୍ଭ ହୋଇଛି । ଆଟଲାଣ୍ଟିକ ଓ ପ୍ୟାସିଫିକ୍ ମହାସାଗରର ତଟବର୍ତ୍ତୀ ଅବସ୍ଥିତ ଆମେରିକାର ମେଟ୍ରୋ ସହର ଯଥା ନ୍ୟୁର୍ଯକ, ଲସ୍ ଏଂଜେଲେସ୍, ସାନ ଫ୍ରାନ୍ସିସ୍କୋ, ବୋଷ୍ଟନ, ୱାସିଂଟନ ପ୍ରଭୃତି ସହରମାନଙ୍କରୁ ଆମେରିକାବାସୀମାନେ ଦେଶର ଅନ୍ୟ ଅଂଚଳକୁ ସ୍ଥାନାନ୍ତର ହେଉଥିବା ବେଳେ ବିଦେଶୀ ଇମିଗ୍ରାଣ୍ଟମାନେ ବହୁ ସଂଖ୍ୟାରେ ଏ ସବୁ ସହରରେ ବସବାସ କରିବାକୁ ପସନ୍ଦ ଏବଂ ଆଗ୍ରହ ପ୍ରକାଶ କରୁଛନ୍ତି । ୨୦୦୦ ମସିହା ଜନଗଣନା ଭିତ୍ତିରେ ଗତ ୬ ବର୍ଷ ଭିତରେ ୮% ନିଉର୍ଯକବାସୀ ବାହାରକୁ ଯିବାବେଳେ ୬ % ଇମିଗ୍ରାଣ୍ଟ ସହରରେ ବସବାସ କରିବା ପାଇଁ ଆସିଛନ୍ତି । ସେହିଭଳି ସାନଫ୍ରାନ୍ସିକୋରେ ୧୦% ଆମେରିକୀୟ ବାହାରକୁ ଗଲାବେଳେ, ୭% ଇମିଗ୍ରାଣ୍ଟ ସହରକୁ ଆସିଛନ୍ତି । ୱାଶିଂଟନ୍‌ରେ ୮% ନୂଆ ଇମିଗ୍ରାଣ୍ଟ । ଲସ୍ ଏଂଜେଲେସରେ ୬% ବାସିନ୍ଦା ବାହାରକୁ ଗଲାବେଳେ, ସେତିକି ପରିମାଣର ଇମିଗ୍ରାଣ୍ଟ ବସତି ପାଇଁ ଆସିଛନ୍ତି । ବଡ଼ ମେଟ୍ରୋ ସହରରୁ ଏହି ସ୍ଥାନାନ୍ତର ପ୍ରବାହର ସଂଖ୍ୟା ବାର୍ଷିକ ହାରାହାରି ୬.୫ ଲକ୍ଷ । ଏକଥା କୋଡ଼ିଏ ବର୍ଷ ପୂର୍ବେ ଘଟୁନଥିଲା । ହୁଏତ ବାସଗୃହର ମୂଲ୍ୟ, ଅତ୍ୟଧିକ ଟ୍ୟାକ୍ସ, କିମ୍ବା ଇମିଗ୍ରାଣ୍ଟଙ୍କ ବହୁସଂଖ୍ୟାରେ ଆଗମନ ସ୍ଥାନୀୟ ଲୋକଙ୍କୁ ବାଧ କରୁଛି ମେଟ୍ରୋ ସହରକୁ ଛାଡ଼ି ଅନ୍ୟ ଅଞ୍ଚଳକୁ ଯିବା ପାଇଁ । ଫଳରେ ମେଟ୍ରୋରେ ସୀମିତ ସଂଖ୍ୟାରେ ଅତି ଧନୀ ଓ କୁଶଳୀ ପେଷାଦାରଙ୍କ ସହିତ ଉଚ୍ଚାଭିଳାଷୀ, ଗତିଶୀଳ ଇମିଗ୍ରାଣ୍ଟଙ୍କ ସଂଖ୍ୟା ବଢ଼ି ଚାଲିଛି ।

ଭବିଷ୍ୟତରେ ଏହାର ପ୍ରଭାବ ଆମେରିକାର ରାଜନୀତି ଉପରେ ନିଶ୍ଚୟ ପଡ଼ିବ । ଡ଼ିମୋକ୍ରାଟ ଦଳର ସମର୍ଥକ ଓ ଆର୍ଥିକ ସହାୟତା ଏ ସବୁ ମେଟ୍ରୋ ସହର ଓ ଜନବହୁଳ ପ୍ରଦେଶ ଗୁଡ଼ିକରୁ । ଗତ ୬ ବର୍ଷ ଭିତରେ ଦେଶର ଜନସଂଖ୍ୟା ୬% ବୃଦ୍ଧି ପାଇଥିଲା ବେଳେ ଏ କୋଷ୍ଟାଲ ବା ତଟବର୍ତ୍ତୀ ସହର ଗୁଡ଼ିକରେ ଜନସଂଖ୍ୟା ମାତ୍ର ୪% ବୃଦ୍ଧି ପାଇଛି । ଅପରପକ୍ଷରେ ଦେଶର ଆଭ୍ୟନ୍ତରୀଣ ସହର ଗୁଡ଼ିକର ଜନସଂଖ୍ୟା ୧୮% ବୃଦ୍ଧି ପାଇଛି । ଲାସ୍ ଭେଗାସ୍, ଅର୍‌ଲାଣ୍ଡୋ, ଫୋନିକ୍ସ, ଟାମ୍ପା ପ୍ରଭୃତି ସହରର ଜନସଂଖ୍ୟାରେ ଅତିମାତ୍ରାରେ ବୃଦ୍ଧି ପରିଲକ୍ଷିତ ହୁଏ । ଏ ସବୁ ଅଞ୍ଚଳରେ ଇମିଗ୍ରାଣ୍ଟଙ୍କ ସଂଖ୍ୟା ଅପେକ୍ଷାକୃତ କମ୍ । ଡ଼ଲାସ୍, ହ୍ୟୁଷ୍ଟନ, ଆଟଲାଣ୍ଟା ବର୍ତ୍ତମାନ ସାନଫ୍ରାନ୍ସିସ୍କୋ , ଡ଼େଟ୍ରଏଟ୍ ଏବଂ ବୋଷ୍ଟନ ଠାରୁ ବଡ଼ । ଟେକ୍ନୋଲଜିର ପ୍ରଗତି ଯୋଗୁ ଛୋଟ ଛୋଟ ସହର ଯଥା ନାସଭିଲ୍, ଅଷ୍ଟିନ, ରିଚମଣ୍ଡ ପ୍ରଭୃତି ବର୍ତ୍ତମାନ ବହୁ ଆମେରିକାବାସୀଙ୍କୁ ଆକୃଷ୍ଟ କରୁଛି ନିଯୁକ୍ତି ଏବଂ ବ୍ୟବସାୟ ଉଦ୍ଦେଶ୍ୟରେ । ଦେଶର ଜନସଂଖ୍ୟା ବୃଦ୍ଧି ହାରର ୩୮% ଏସବୁ ଅଂଚଳରୁ । ଫଳରେ ଜନସଂଖ୍ୟା ମାନଚିତ୍ରରେ ପରିବର୍ତ୍ତନ ହେତୁ ହାଉସ୍ ଅଫ ରିପ୍ରେଜେଣ୍ଟେଟିଭ୍‌ର ପ୍ରତିନିଧିତ୍ୱର ରୂପ ଭବିଷ୍ୟତରେ ବଦଳିବାର ସମ୍ଭାବନା ରହିଛି । ମେଟ୍ରୋଗୁଡ଼ିକ ପାଂରପାରିକ ଭାବେ ଡ଼ିମୋକ୍ରାଟ ପ୍ରତିନିଧିଙ୍କୁ ସମର୍ଥନ କରୁଥିଲେ । କିନ୍ତୁ ଡ଼େଟ୍ରଏଟ୍, କ୍ଲିଭଲାଣ୍ଡ, ପିଟସବର୍ଗ, ପ୍ରଭୃତି ଶିଳ୍ପ ସମୃଦ୍ଧ ସହର

ଗୁଡ଼ିକ ବର୍ତ୍ତମାନ ରୁଗ୍ଣ ଅବସ୍ଥାରେ । ସେଠାରେ ଦ୍ରୁତଗତିରେ ଜନସଂଖ୍ୟାର ହ୍ରାସ ହେଉଛି । ତେଣୁ ଭବିଷ୍ୟତରେ ନ୍ୟୁୟର୍କ, ନ୍ୟୁଜର୍ସୀ, ଇଲିନଏସ୍ ପ୍ରଭୃତି ରାଜ୍ୟର ପ୍ରାଧାନ୍ୟ ଭୋଟ ଦୃଷ୍ଟିରୁ ରାଜନୀତିରେ କମିବ । ପରିବର୍ତ୍ତେ ଟେକ୍ସାସ୍, ଫ୍ଲୋରିଡ଼ା, ଆରିଜୋନା, ନେଭେଡ଼ା ପ୍ରଭୃତି ରାଜ୍ୟମାନଙ୍କର ଭୋଟ କ୍ଷମତା ହାଉସ ଅଫ୍ ରିପ୍ରେଜେଣ୍ଟେଟଭ ପ୍ରତିନିଧିତ୍ୱକୁ ପ୍ରଭାବିତ କରିବ । ମୋଟ୍ରୋ ସମର୍ଥିତ ଡ଼ିମୋକ୍ରାଟ ଦଳର ଭିତ୍ତିଭୂମି ଭବିଷ୍ୟତରେ ଦୁର୍ବଳ ହେବା ସଂଗେ ସଂଗେ ଆଭ୍ୟନ୍ତରିଣ ଛୋଟ ସହର ଗୁଡ଼ିକର ଭୂମିକା ରିପବ୍ଲିକାନ ଦଳର ସହାୟକ ହୋଇପାରେ ।

ଆମ ଦେଶରେ ଅର୍ଥନୀତିର ଉଦାରୀକରଣ ଓ ପ୍ରଗତି ସଂଗେ ସଂଗେ ଗ୍ରାମାଞ୍ଚଳରୁ ଲୋକେ ସହରାଭିମୁଖୀ ହେବା ସ୍ୱାଭାବିକ୍ । ଛୋଟ ଛୋଟ ସହର ଗୁଡ଼ିକର ପ୍ରାଧାନ୍ୟ ଓ ଭୂମିକା ଦେଶର ଅର୍ଥନୀତିରେ ବୃଦ୍ଧି ପାଇବାରେ ଲାଗିଛି । ଦେଶର ରାଜନୈତିକ ଦଳ ଗୁଡ଼ିକର ନେତୃତ୍ୱ ଏ ଦିଗ ପ୍ରତି ଧ୍ୟାନ ଦେବା ଆବଶ୍ୟକ ରହିଛି । ନିର୍ବାଚନ ମଣ୍ଡଳୀ ସୀମା ନିର୍ଦ୍ଧାରଣ ରାଜନୀତି ଅପେକ୍ଷା ଜନମତର ପ୍ରକୃତ ପ୍ରତିଫଳନ ପାଇଁ ପ୍ରଚେଷ୍ଟା ଗଣତନ୍ତ୍ର ପାଇଁ ସହାୟକ ହେବ ।

❋❋❋

# ଓଡ଼ିଶା, ଆତଙ୍କବାଦ ଓ ସୁରକ୍ଷା ସଚେତନତା

ଆଜିକି ଦଶ ବର୍ଷ ପୂର୍ବେ କୋଲକାତାରୁ ଆନ୍ତର୍ଜାତୀୟ ବିମାନ ଯାତ୍ରା କରିବା ଦୁରୂହ ଥିଲା, କିନ୍ତୁ ଏବେ ସେ ପରିସ୍ଥିତି ନାହିଁ । କିଛିଦିନ ତଳେ କୋଲକାତା ବିମାନ ବନ୍ଦରରେ ସେ ପରିବର୍ତ୍ତନର ଆଭାସ ମିଳିଲା । ଲୁଫ୍‌ଥାନ୍‌ସା ଓ ଥାଇ ଏୟାର୍‌ୱେଜ୍ ଉଡ଼ାଣରେ ସବୁ ସିଟ୍ ଭରା ଏବଂ ଯାତ୍ରୀମାନଙ୍କ ମଧ୍ୟରୁ ବେଶୀ ଭାଗ ବିଦେଶୀ । ଯାତ୍ରୀମାନଙ୍କ ମଧ୍ୟରୁ ଅଧିକାଂଶ ବ୍ୟବସାୟ ଉଦ୍ଦେଶ୍ୟରେ ଇଉରୋପ ଓ ଆମେରିକା ଅଭିମୁଖେ ଯାଉଛନ୍ତି । କେତେକଙ୍କ ସନ୍ତାନ ସନ୍ତତି ବିଦେଶରେ ବସବାସ କରୁଛନ୍ତି ।

କୋଲକାତାରୁ ଜର୍ମାନୀର ଫ୍ରାଙ୍କଫଟ୍ ବିମାନ ଯାତ୍ରା ପ୍ରାୟ ୯ ଘଣ୍ଟା । ଦୁଇ ଘଣ୍ଟା ପରେ ନ୍ୟୁୟର୍କ ଯାତ୍ରା କରିବାର ଥିଲା । ଫ୍ରାଙ୍କଫଟ୍ ବିମାନ ବନ୍ଦରରେ ପହଞ୍ଚିଲା ପରେ ବିସ୍ତୃତ ବିମାନ ବନ୍ଦରର ଏକ ଟର୍ମିନାଲ୍‌ର ଅନ୍ୟ ଟର୍ମିନାଲ୍ ପର୍ଯ୍ୟନ୍ତ ମନୋ ରେଇ ସାହାଯ୍ୟ ନେଇ ଯିବା ପରେ ଆମେ ସୁରକ୍ଷା ଯାଂଚ ପାଇଁ ପହଞ୍ଚିଲୁ । ସେଠାରେ ଦେଖିଲୁ - ଲମ୍ବା ଲାଇନ୍ ଯାତ୍ରୀମାନଙ୍କର । କ୍ୟାବିନ୍ ବ୍ୟାଗ୍ ଏକ୍ସରେ ମେସିନ୍‌ରେ ତନଖି ହେଉଛି ଏବଂ ପ୍ରତ୍ୟେକ ବ୍ୟକ୍ତିର ଶାରୀରିକ ଯାଞ୍ଚ ମଧ୍ୟ କରାଯାଉଛି । ଯାତ୍ରୀମାନଙ୍କର ମୋବାଇଲ୍, ଲାପ୍‌ଟପ୍ ପ୍ରଭୃତିକୁ ବିଭିନ୍ନ ଉପାୟରେ ତନଖି ଦେଖା ଯାଉଛି । ସେଥିରେ ଲିଙ୍ଗ, ଜାତି , ରଂଗ ,ଧର୍ମ ଅଥବା ବୟସର କୌଣସି ଭେଦ ନାହିଁ । ବିନା ଆପତ୍ତିରେ ସବୁ ଯାତ୍ରୀ ଯାଞ୍ଚକାରୀଙ୍କ ସହିତ ସହଯୋଗ କରୁଛନ୍ତି । ସଂପୂର୍ଣ୍ଣ ଭାବେ ସନ୍ତୁଷ୍ଟ ହେଲା ପରେ ଯାତ୍ରୀକୁ ଅନୁମତି ମିଳୁଛି ବିମାନ ଆରୋହଣ ଗେଟ୍ ପର୍ଯ୍ୟନ୍ତ ଯିବା ପାଇଁ । କାହାରି ମୁହଁରେ ଅସ୍ଥିରତା ବା ଅଧୈର୍ଯ୍ୟ ହେବାର ଆଭାସ ନାହିଁ । ବିମାନ ଛାଡ଼ିବାର ଠିକ୍ ୨୦ ମିନିଟ୍ ପୂର୍ବରୁ ଆମେ ପହଞ୍ଚିଲୁ ଗେଟ୍ ପାଖରେ, ସେଠି ମଧ୍ୟ ଶୃଙ୍ଖଳିତ ଯାତ୍ରୀ । କେହି କାହାକୁ ଧକ୍କା ମାରି ଆଗକୁ ଯିବାର ଚେଷ୍ଟା କରୁନାହିଁ ।

ଏତେ ପୁଙ୍ଖାନୁପୁଙ୍ଖ ସୁରକ୍ଷା ଯାଞ୍ଚର ପରମ୍ପରା ଆମେରିକାରେ ୯/୧୧ ଆତଙ୍କବାଦୀ ଆକ୍ରମଣ ପରେ ହିଁ ହୋଇଛି । ସମସ୍ତ ପାଶ୍ଚାତ୍ୟ ଦେଶରେ ଏଭଳି ସୁରକ୍ଷା ବ୍ୟବସ୍ଥା ଦେଖିବାକୁ ମିଳୁଛି । ବିଭିନ୍ନ ସ୍ତରରେ ଓ ବିଭିନ୍ନ ଉପାୟରେ ସୁରକ୍ଷା ଯାଞ୍ଚ କରାହେଉଛି । ଆମେରିକା ଅଭିମୁଖୀ ବିମାନ ଗୁଡ଼ିକ ଉପରେ ସବୁ ସୁରକ୍ଷା ଏଜେନ୍‌ସିଗୁଡ଼ିକର କଡ଼ା ନଜର । ଆତଙ୍କବାଦୀ

ଆକ୍ରମଣ ପରିପ୍ରେକ୍ଷୀରେ ସବୁ ରାଷ୍ଟ୍ର ଏଭଳି ସୁରକ୍ଷା ବ୍ୟବସ୍ଥା ସକାଶେ ସହଯୋଗର ହାତ ବଢ଼ାଉଛନ୍ତି । ନ୍ୟୁୟର୍କ ବିମାନବନ୍ଦର ପରିସରରେ ମଧ୍ୟ ସମସ୍ତେ ଶୃଙ୍ଖଳିତ । ଶହ ଶହ ଯାତ୍ରୀଙ୍କ ସୁବିଧା ପାଇଁ ଅନେକ କାଉଣ୍ଟରର ବ୍ୟବସ୍ଥା କରାଯାଇଛି । ଆମେରିକାର ନାଗରିକ, କୂଟନୀତିଜ୍ଞ, ବିମାନ କର୍ମଚାରୀ, ସୁରକ୍ଷା ବାହିନୀ, ବିଦେଶୀ ପର୍ଯ୍ୟଟକଙ୍କ ପାଇଁ ଅଲଗା ଅଲଗା କାଉଣ୍ଟର । ଶୃଙ୍ଖଳା ଓ ନିରବତାର ଏକ ଅପୂର୍ବ ବାତାବରଣ । ପ୍ରତ୍ୟେକ ଯାତ୍ରୀର ଫଟୋ ଓ ଟିପ ଚିହ୍ନର ରେକର୍ଡ଼ ରଖା ହେଉଛି । ସୁରକ୍ଷା ପାଇଁ ଏକ ନୂତନ ପରୀକ୍ଷା । ଜୀବନ, ଧନସଂପଦ, ମୂଲ୍ୟବୋଧ, ସୀମାରେଖା ଏବଂ ସଭ୍ୟତା, ଏ ସବୁ ପ୍ରତି ବିପଦ ଘନେଇ ଆସିଥିବା ବେଳେ ଏ ସବୁର ସୁରକ୍ଷା ପାଇଁ ସମୂହ ପ୍ରଚେଷ୍ଟାର ଇଏ ହେଉଛି ଉଦାହରଣ । ଏସବୁ ସତ୍ୱେ ଜନସାଧାରଣ ଯେପରି ଅସୁବିଧାର ସମ୍ମୁଖୀନ ନ ହୁଅନ୍ତି ତା' ପ୍ରତି ମଧ୍ୟ ନଜର ରଖା ଯାଇଛି । ଏ ସବୁ ସମ୍ଭବ ହେଉଛି ଜନସାଧାରଣଙ୍କ ସହଯୋଗ ହେତୁ ।

ଏ ସବୁ କଣ ଆମ ଦେଶରେ ବା ପ୍ରଦେଶରେ ସମ୍ଭବ ? ଭୁବନେଶ୍ୱର ବିମାନ ବନ୍ଦରରେ ନେତା ଓ ଅଭିନେତାମାନଙ୍କ ଆଗମନ ବେଳେ ବହୁ ସମୟରେ ବିଶୃଙ୍ଖଳାର ନମୁନା ନଜରକୁ ଆସେ । ସେଇ ସୁରକ୍ଷାକୁ ନେଇ ନମନୀୟ ମନୋଭାବ ହେତୁ ଆମ ସାର୍ବଭୌମତ୍ୱର ପ୍ରତୀକ ପାର୍ଲିଆମେଣ୍ଟ ଉପରେ ଆକ୍ରମଣ ସମ୍ଭବ ହୋଇଛି । ତା ନ ହେଲେ ସାଂସଦଙ୍କ ମିଛ ଷ୍ଟିକର କାର୍‌ରେ ଲଗାଇ ଆତଙ୍କବାଦୀ ପାର୍ଲିଆମେଣ୍ଟର ସୁରକ୍ଷା ବଳୟ ଭେଦକରି ପାରିଲେ କିପରି ? କିଛି ବର୍ଷ ତଳେ ଓଡ଼ିଶା ବିଧାନ ସଭାରେ ମଧ୍ୟ ଅଘଟନଟିଏ ଘଟିଗଲା । ଜଣେ ବିଧାୟକଙ୍କୁ ପରିଚୟ ପତ୍ର ଦେଖାଇବାକୁ ଅନୁରୋଧ କରିବା ହେତୁ କର୍ତ୍ତବ୍ୟ ପରାୟଣ ସୁରକ୍ଷା କର୍ମଚାରୀଙ୍କ ବିରୋଧରେ ହୋ ହଲ୍ଲା ହେଲା । ଏଭଳି ମନୋବୃତ୍ତି ଏଠାରେ ଅଧିକ ।

ଏବେ ଶ୍ରୀମନ୍ଦିର କଥା ପଢ଼ୁ । ଶ୍ରୀଜଗନ୍ନାଥ ମନ୍ଦିରରେ ସୁରକ୍ଷା ବ୍ୟବସ୍ଥା ସଂପର୍କରେ ବିଭିନ୍ନ ସମୟରେ ଗଣମାଧ୍ୟମରେ ଆଲୋଚନା କରାଯାଏ । ଶ୍ରୀମନ୍ଦିର ଆତଙ୍କବାଦୀଙ୍କ ଲକ୍ଷ୍ୟ ବଳୟରେ ଥିବାର ସୂଚନା ସରକାରଙ୍କ ପାଖରେ ପହଞ୍ଚିଛି । ଅକ୍ଷର ଧାମ ମନ୍ଦିର ଉପରେ ଆତଙ୍କବାଦୀଙ୍କ ଆକ୍ରମଣ ପରେ ଶ୍ରୀମନ୍ଦିରର ସୁରକ୍ଷା ବିଷୟରେ ସମସ୍ତେ ଉଦ୍‌ବିଗ୍ନ ହେବା ସ୍ୱାଭାବିକ କଥା । କିନ୍ତୁ କେତେକ ସେବକ ଓ ଭକ୍ତମାନେ ଯୁକ୍ତି କରନ୍ତି ଯେ ଜଗନ୍ନାଥ ନିଜେ ନିଜକୁ ସୁରକ୍ଷା କରି ଆସିଛନ୍ତି ଓ ଭବିଷ୍ୟତରେ ମଧ୍ୟ କରିବେ । ଏଣୁ ମନ୍ଦିରରେ କଡ଼ାକଡ଼ି ସୁରକ୍ଷା ବ୍ୟବସ୍ଥା ପ୍ରତି କାହାରି ଆନ୍ତରିକ ଆଗ୍ରହ ପ୍ରକାଶ ପାଉନାହିଁ । ଶ୍ରୀମନ୍ଦିରରେ କଡ଼ା ସୁରକ୍ଷା ବ୍ୟବସ୍ଥା କରାଗଲେ ଆମର ପ୍ରଭାବଶାଳୀ ନେତା ବା ଅଫିସରମାନେ ଏହି ଯାଞ୍ଚର ସମ୍ମୁଖୀନ ହେବା ପାଇଁ ସର୍ବନିମ୍ନ କଷ୍ଟ ଉଠାଇବେ ତ ? ଏହା ଏକ ବଡ଼ ପ୍ରଶ୍ନ ।

ନିକଟରେ ପୁରୀର ଏକ ହୋଟେଲରୁ ଜନୈକ ସନ୍ଦିଗ୍ଧ ଆତଙ୍କବାଦୀକୁ ଗିରଫ କରାଯାଇଛି । ସେଇଭଳି ବିଗ୍ ବଜାର ସମ୍ମୁଖରୁ ମଧ୍ୟ ଜଣେ କୁଖ୍ୟାତ ଅପରାଧିକୁ ଗିରଫ କରାଯାଇଛି, ଯାହାର ଦାଉଦ୍ ସହିତ ସଂପର୍କ ରହିଛି । ଏବେ ଆମ ସନ୍ଦେହ ଧୀରେ ଧୀରେ ସତ୍ୟତାରେ ବଦଳିବାକୁ ଯାଉଛି ଯେ ଆମ ଏହି ଶାନ୍ତ ରାଜ୍ୟଟି ବେଶୀ ସୁରକ୍ଷିତ ନୁହେଁ । ତେବେ ଅସୁରକ୍ଷାର କଳାବାଦଲର ଛାଇରୁ ମୁକ୍ତ ହେବା ପାଇଁ ଆମେ ସମସ୍ତେ ସରକାର ଏବଂ ପ୍ରଶାସନ ସହିତ ସହଯୋଗ କରିବା ଉଚିତ ।

❋❋❋

# ବରିଷ୍ଠ ନାଗରିକ –ଏକ ନୂତନ ଦିଗନ୍ତ

ବର୍ତ୍ତମାନ ପୃଥିବୀ ଜନସଂଖ୍ୟାର ୭ ପ୍ରତିଶତ ହେଉଛନ୍ତି ବରିଷ୍ଠ ନାଗରିକ । ଏ ସଂଖ୍ୟା ଶତାବ୍ଦୀର ମଧ୍ୟଭାଗରେ ୧୫ ପ୍ରତିଶତକୁ ବୃଦ୍ଧି ପାଇବ ବୋଲି ବିଶେଷଜ୍ଞମାନେ ଆକଳନ କରିଛନ୍ତି । ଯେଉଁ ଶିଶୁ ଆଜି ଜନ୍ମ ନେଇଛି ସେ ୬୫ ବର୍ଷ ଯାଏ ବଞ୍ଚିବାର ସମ୍ଭାବନା ରହିଛି । ଅର୍ଦ୍ଧ ଶତାବ୍ଦୀ ପୂର୍ବେ ଏହା ଥିଲା ୫୦ ବର୍ଷ ।

ବିକଶିତ ଦେଶମାନଙ୍କରେ ବାର୍ଦ୍ଧକ୍ୟ ସମସ୍ୟା ଓ ବରିଷ୍ଠ ନାଗରିକଙ୍କ ସଂଖ୍ୟା ଦ୍ରୁତଗତିରେ ବୃଦ୍ଧି ପାଉଛି । ଜାପାନରେ ୬୫ ବର୍ଷରୁ ଊର୍ଦ୍ଧ୍ୱ ବୟସର ନାଗରିକ ଜନସଂଖ୍ୟାର ୨୦ ପ୍ରତିଶତରୁ ବେଶୀ । ସନ ୨୦୨୫ ବେଳକୁ ଏ ସଂଖ୍ୟା ବୃଦ୍ଧି ପାଇ ୩୦ ପ୍ରତିଶତ ହେବାର ସମ୍ଭାବନା । ଆମେରିକା, ୟୁରୋପ ଏଭଳିକି ଦକ୍ଷିଣ କୋରିଆ ଓ ଥାଇଲାଣ୍ଡ ପ୍ରଭୃତି ଦେଶରେ ଅନୁରୂପ ସମସ୍ୟା ତୀବ୍ର ରୂପ ଧାରଣ କଲାଣି । ବିକାଶଶୀଳ ଦେଶ ବିଶେଷ କରି ଚାଇନା ଓ ଭାରତରେ ଦାରିଦ୍ର୍ୟ ସହ ସ୍ୱାସ୍ଥ୍ୟ ସେବା, ପେନସନ୍ ସୁବିଧା ଅର୍ଥନୀତି ଉପରେ ଅସହ୍ୟ ଚାପ ପକାଇବାର ଆଶଙ୍କା ରହିଛି । ମୂଳ କାରଣ ହେଲା ଆୟୁରେଖାର ବୃଦ୍ଧି ଏବଂ ଜନ୍ମହାର (ଉତ୍ପାଦକ ଶକ୍ତି)ର ହ୍ରାସ । ମିଳିତ ଜାତିସଂଘର ଏକ ଅନୁଧ୍ୟାନ ଅନୁସାରେ ଏ ଶତାବ୍ଦୀର ଶେଷଭାଗରେ ବରିଷ୍ଠ ନାଗରିକଙ୍କ ସଂଖ୍ୟା ତିନିଗୁଣ ବୃଦ୍ଧିପାଇବ ।

ଏଭଳି ପରିସ୍ଥିତିର ପରିଣତି କ'ଣ ? ସଂକ୍ଷେପରେ — କ୍ରମକ୍ଷୟିଷ୍ଣୁ ଜନ୍ମହାରର ଅର୍ଥ ଅଳ୍ପ ସଂଖ୍ୟକ କାର୍ଯ୍ୟକ୍ଷମ ନାଗରିକଙ୍କ କ୍ରମବର୍ଦ୍ଧିଷ୍ଣୁ ବହୁସଂଖ୍ୟକ ବରିଷ୍ଠ ନାଗରିକଙ୍କୁ ସହାୟତା ଯୋଗାଇ ଦେବାକୁ ପଡ଼ିବ । ଉଦାହରଣ ସ୍ୱରୂପ ୧୯୪୦ ମସିହାରେ ୧୦୦ଜଣ କାର୍ଯ୍ୟକ୍ଷମ ଆମେରିକା ବାସୀ ୧୧ଜଣ ଅବସର ପ୍ରାପ୍ତ ଲୋକଙ୍କର ଦେଖାଶୁଣା କରୁଥିଲେ । ଏ ଶତାବ୍ଦୀର ମଧ୍ୟଭାଗରେ ସେଇ ୧୦୦ ଜଣ ଲୋକଙ୍କୁ ୪୦ ଜଣ ଅବକାଶ ପ୍ରାପ୍ତ ବରିଷ୍ଠ ନାଗରିକଙ୍କର ଦେଖାଶୁଣା କରିବାକୁ ପଡ଼ିବ ।

ନୀତି ନିର୍ଦ୍ଧାରକଙ୍କ ପାଇଁ ଏହାର ଅର୍ଥ ହେଲା, ଭବିଷ୍ୟତରେ ଟ୍ୟାକ୍ସ ନୀତି, ବଜେଟ୍ ଆକଳନ, ଜୀବନ ଶୈଳୀରେ ମୌଳିକ ପରିବର୍ତ୍ତନ ଅବଶ୍ୟମ୍ଭାବୀ । ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ଖର୍ଚ୍ଚ ଓ ଅର୍ଥନିବେଶ ଅଧିକ ହେବାର ସମ୍ଭାବନା , ନୂତନ ଦ୍ରବ୍ୟ ଉତ୍ପାଦନର ପ୍ରୟାସ ବରିଷ୍ଠ ନାଗରିକଙ୍କୁ ଧ୍ୟାନରେ ରଖି ହେବ । ନର୍ସିଙ୍ଗ, ବରିଷ୍ଠ ଉପଯୋଗୀ ଖାଦ୍ୟ, ଫିଟ୍‌ନେସ୍ ଉପକରଣ,

କସମେଟିକ, ଘରୋଇ ଉପକରଣ, ଫର୍ଣ୍ଣିଚର, ଘର ଦ୍ୱାରର ନୂଆ ଡ଼ିଜାଇନ୍ ଇତ୍ୟାଦି ଉପରେ ପ୍ରାଧାନ୍ୟ ଦିଆଯିବ ।

ଭାରତବର୍ଷର ଜନସଂଖ୍ୟା ପରିସଂଖ୍ୟାନ ଛବି ମଧ୍ୟ ଅନୁରୂପ । ଆଗାମୀ ୩୦ ବର୍ଷରେ ଜନସଂଖ୍ୟାର ୧୫ ପ୍ରତିଶତ ହେବେ ବରିଷ୍ଠ ନାଗରିକ । ଏ ଚାଲେଞ୍ଜ ପାଇଁ ଆମେ ସମସ୍ତେ-ସରକାର, ପରିବାର, ସମାଜର ସବୁ ବର୍ଗର ଲୋକେ ପ୍ରସ୍ତୁତ ଅଛେ ତ ? ଏତେ ବଡ଼ ସଂଖ୍ୟାରେ ବରିଷ୍ଠ ନାଗରିକଙ୍କୁ ସହାୟତା ଦେବା ପାଇଁ ଆମେ ସଚେତନ ତ ?

ଆମ ଦେଶର ସହର ଓ ଗ୍ରାମାଞ୍ଚଳର ଚିତ୍ରପଟରେ ବହୁ ପରିବର୍ତ୍ତନ ଗତ ପଚାଶ ବର୍ଷରେ ହୋଇଛି । ଯୌଥ ପରିବାର ପରମ୍ପରା ଅବକ୍ଷୟ ଯୋଗୁ ବରିଷ୍ଠ ନାଗରିକଙ୍କର ସମସ୍ୟା, ସହାୟତା ଆଶାତୀତ ଭାବେ ବୃଦ୍ଧି ପାଇଛି । ନିଃସଙ୍ଗତା ଏବଂ ସମାଜର ଉଦାସୀନତା ସେମାନଙ୍କର ମାନସିକ ସ୍ଥିରତା, ବଞ୍ଚିବାର ସ୍ପୃହାକୁ ନିରାଶ, ହତାସାରେ ଭରି ଦେଉଛି ।

ଯୌଥ ପରିବାରରେ ପ୍ରତ୍ୟେକ ସଦସ୍ୟର ଗୋଟିଏ ନିର୍ଦ୍ଦିଷ୍ଟ ଭୂମିକା ଥିଲା । ବୃଦ୍ଧ ଓ ବୃଦ୍ଧାଙ୍କ ଭୂମିକା ପରିବାରର ପରିପୂରକ ଥିଲା । ଅନୁଭୂତି ଥିଲା ତାଙ୍କର ସମ୍ବଳ ଯାହାର କୌଣସି ବିକଳ୍ପ ନାହିଁ । ପରିବାରର କନିଷ୍ଠ ସଦସ୍ୟ ଓ ଶିଶୁମାନଙ୍କ ମଧ୍ୟରେ ମୂଲ୍ୟବୋଧ ସୃଷ୍ଟି କରିବାର ଦାୟିତ୍ୱ ଥିଲା ସେମାନଙ୍କର । ପରମ୍ପରା ସହିତ ପରିଚିତ କରାଇବାରେ ମୁଖ୍ୟ ଅଂଶଗ୍ରହଣ କରୁଥିଲେ ସେମାନେ । ସେମାନେ ଥିଲେ ମୁଖିଆ । ସମାଜର ଭାରସାମ୍ୟ ରଖିବା ଥିଲା ତାଙ୍କର ଦାୟିତ୍ୱ । ଜୀବନର ଶେଷ ଭାଗରେ ସମ୍ପୂର୍ଣ୍ଣତାର ଆନନ୍ଦ ଅନୁଭବ କରୁଥିଲେ ସାଧାରଣ ମଣିଷ ଭାବେ ଜ୍ଞାତି, କୁଟୁମ୍ବଙ୍କୁ ନେଇ । ପାରିବାରିକ କନ୍ଦଳ ଅବଶ୍ୟ ଥିଲା, କିନ୍ତୁ ନଥିଲା ନିଃସଙ୍ଗତା କିମ୍ବା ଅସହାୟତା । ଏ ଛବିରେ ପରିବର୍ତ୍ତନ ଆସିଛି, ଗ୍ରାମରେ ଓ ସହରରେ । ବର୍ତ୍ତମାନ ପରିସ୍ଥିତିକୁ ଦୃଷ୍ଟିରେ ରଖି ସରକାର, ପରିବାର ଏବଂ ବ୍ୟକ୍ତି ବିଶେଷ ସମସ୍ତଙ୍କର ପ୍ରସ୍ତୁତ ହେବାର ସମୟ ଆସିଛି । ଆମ ଲୋକସଂଖ୍ୟାର ୫୫ ପ୍ରତିଶତଙ୍କ ବୟସ ବର୍ତ୍ତମାନ ୪୦ବର୍ଷରୁ କମ୍ । ଏ ଏକ ଜନସଂଖ୍ୟକୀୟ ସୁଯୋଗ । ସେମାନଙ୍କର ଭବିଷ୍ୟତକୁ ଏବଂ ବରିଷ୍ଠ ନାଗରିକଙ୍କ ସମସ୍ୟାକୁ ଆଖି ଆଗରେ ରଖି ପ୍ରସ୍ତୁତିର ଖସଡ଼ା ରଚନା କରାଯିବା ଦରକାର । କେବଳ ବାର୍ଦ୍ଧକ୍ୟ ଭତ୍ତା ଏହାର ସମାଧାନ ନୁହେଁ । ପ୍ରଥମେ ବରିଷ୍ଠ ନାଗରିକଙ୍କ ଅଧିକାରକୁ ସ୍ୱୀକୃତି ମିଳୁ । ସେମାନଙ୍କ ମଧ୍ୟରୁ ଅନେକ ଏବେ ବି କାର୍ଯ୍ୟକ୍ଷମ ଏବଂ ସମାଜର ପ୍ରଗତି ତଥା ଭାରସାମ୍ୟ ରକ୍ଷା ପାଇଁ ସେମାନଙ୍କର ସହଯୋଗ, ଯୋଗଦାନର ପ୍ରୟୋଜନ ରହିଛି । ସେମାନଙ୍କ ପ୍ରତି ଦୟା ଦେଖାଇବା ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସୁ । ଭବିଷ୍ୟତ ନୀତିନିର୍ଦ୍ଧାରଣ ଏବଂ ସେମାନଙ୍କ କଲ୍ୟାଣ ପାଇଁ ସ୍ଥାୟୀ ଜାତୀୟ ଓ ପ୍ରାଦେଶିକ କମିଶନ୍ ଗଠନ କରାଯାଉ ।

ବରିଷ୍ଠ ନାଗରିକଙ୍କୁ ପରିଚୟ ପତ୍ର ପ୍ରଦାନ କରାଯାଉ । ସେମାନଙ୍କୁ ମ୍ୟୁନିସପାଲ୍ଟି କରରୁ ମୁକ୍ତ କରାଯାଉ । ଆୟକରରୁ ବେଶୀ ରିହାତି ମିଳୁ । ପର୍ଯ୍ୟଟନସ୍ଥଳରେ ପ୍ରବେଶ ଶୁଳ୍କ

ମୁକ୍ତ ହେଉ । ସରକାରୀ ହସପିଟାଲରେ ମାଗଣାରେ କିମ୍ବା ଅଳ୍ପ ଖର୍ଚ୍ଚରେ ଚିକିତ୍ସା ମିଳୁ । ଘରୋଇ ହସପିଟାଲରେ ମଧ୍ୟ ସମାନ ସୁବିଧା ମିଳୁ । ବୟସ୍କଙ୍କ ସେବା ପାଇଁ ନର୍ସିଙ୍ଗ ଓ ଡ଼ାକ୍ତରୀ ପାଠ୍ୟକ୍ରମର ସିଲାବସ୍‌ରେ ବିଶେଷ ତାଲିମ ଦିଆଯିବାର ସୁବିଧା ରହୁ । ନିରାପତ୍ତା ଓ ସୁରକ୍ଷା ପାଇଁ ପୁଲିସ୍ ନିକଟରେ ସେମାନଙ୍କର ବିବରଣୀ ରହୁ ଏବଂ ପୁଲିସ ନିୟମିତ ସେମାନଙ୍କ ସହିତ ଯୋଗାଯୋଗ ରଖନ୍ତୁ । ସ୍ଥାନୀୟ ସ୍ୱେଚ୍ଛାସେବୀ ସଂସ୍ଥାର କର୍ମୀମାନେ ନିୟମିତ ଭାବେ ସେମାନଙ୍କ ସହିତ ସମ୍ପର୍କ ରଖନ୍ତୁ । ସେମାନଙ୍କୁ ନିଃସଙ୍ଗତା, ଅସହାୟତା ଓ ଅବସାଦ ଓ ବିଶାଦଗ୍ରସ୍ତ ମାନସିକ ଅବସ୍ଥାରୁ ଦୂରରେ ରଖିବାର ପ୍ରଚେଷ୍ଟା ହେଉ ।

ତା'ଛଡ଼ା ଅନ୍ୟାନ୍ୟ ସଂଗଠନ ଗଢ଼ି ଉଠୁ ଯେଉଁମାନେ କେତେକ ଅତ୍ୟାବଶ୍ୟକ ସେବା ଯୋଗାଇ ଦେଇ ପାରିବେ ଯଥା:—ବିଜୁଳି, ଜଳ, ଟେଲିଫୋନ, କ୍ରେଡ଼ିଟ୍ କାର୍ଡ଼ ପାଉତି ଓ ବ୍ୟାଙ୍କ ସମ୍ପର୍କିତ କାର୍ଯ୍ୟ । ସେ ସବୁ କାର୍ଯ୍ୟ ପାଇଁ ବରିଷ୍ଠ ନାଗରିକମାନେ କିଛି ପାଉଣା ଓ ପାରିଶ୍ରମିକ ଦେବାକୁ ପ୍ରସ୍ତୁତ ଥିବା ଦରକାର ।

ବରିଷ୍ଠ ନାଗରିକଙ୍କ ବୀମା ପାଇଁ ବାସ୍ତବବାଦୀ ଆଇନ୍ ପ୍ରଣୀତ ହେଉ । ପରିବାରର ସେମାନଙ୍କ ପ୍ରତି ଦାୟିତ୍ୱ ମଧ୍ୟ ଆଇନ ସମ୍ମତ ହେଉ ଏବଂ ଅବହେଳା ପାଇଁ ଦଣ୍ଡ ବିଧାନର ବ୍ୟବସ୍ଥା ରହୁ । ଫାଷ୍ଟ ଟ୍ରାକ୍ କୋର୍ଟରେ ବିଚାର ହେଉ । ସରକାର ବରିଷ୍ଠ ନାଗରିକମାନଙ୍କୁ ସାମାଜିକ ସମୀକ୍ଷା କାର୍ଯ୍ୟରେ ନିୟୋଜିତ କରନ୍ତୁ । ବର୍ତ୍ତମାନ ଉନ୍ନୟନମୂଳକ କାର୍ଯ୍ୟ ଓ ଶାସନ କଳରେ ଯେଉଁଭଳି ଦୁର୍ନୀତି ବ୍ୟାପିଛି, ସେ ଦୃଷ୍ଟିରୁ ବରିଷ୍ଠ ନାଗରିକଙ୍କ ଅବୈତନିକ ସେବା ଓ ପରାମର୍ଶ ବହୁ କ୍ଷେତ୍ରରେ ଉପଯୋଗୀ ହେବ । ଆଇନ ଶୃଙ୍ଖଳା ପାଳନ ଓ ସରକାରୀ କାର୍ଯ୍ୟର ମାନ ନିୟନ୍ତ୍ରଣ ପାଇଁ ସେମାନଙ୍କର ଭୂମିକା ରହିଛି ।

ସହରାଞ୍ଚଳରେ ବସବାସ କରୁଥିବା ବୟସ୍କ ବ୍ୟକ୍ତିଗଣ ସହରମାନଙ୍କରେ ଯେଉଁ ବେଆଇନ କାର୍ଯ୍ୟ ଚାଲିଛି ତା'ର ପୂର୍ବସୂଚନା କର୍ତ୍ତୃପକ୍ଷଙ୍କୁ ଦେଇପାରିବେ । ଶିକ୍ଷକ ଅଭାବରେ ଯେଉଁ ସ୍କୁଲ, କଲେଜରେ ଛାତ୍ରମାନେ କ୍ଷତିଗ୍ରସ୍ତ ହେଉଛନ୍ତି, ସେମାନଙ୍କୁ ସାହାଯ୍ୟ କରିପାରିବେ ବରିଷ୍ଠ ନାଗରିକମାନେ । ବସ୍ତି ଅଞ୍ଚଳରେ ବିନା ପାରିଶ୍ରମିକରେ ସ୍ୱାସ୍ଥ୍ୟସେବା ପ୍ରଦାନ କରିବା ସମ୍ଭବ । ମଠ, ମନ୍ଦିର, ମସଜିଦ୍ ଇତ୍ୟାଦିର ସୁପରିଚାଳନାରେ ସହଯୋଗ କରିବାର ଆବଶ୍ୟକତା ରହିଛି । ଉପରୋକ୍ତ କଥାଗୁଡ଼ିକ କେବଳ ଉଦାହରଣ ମାତ୍ର । ଏଭଳି କ୍ଷେତ୍ର ନାହିଁ ଯେଉଁଠି ବରିଷ୍ଠ ନାଗରିକର ଜ୍ଞାନ ଓ ଅନୁଭୂତିର ପ୍ରୟୋଗ ହୋଇପାରିବ ନାହିଁ । ଏଥିପାଇଁ ସରକାରଙ୍କ ଦ୍ୱାରା ସୁଚିନ୍ତିତ ଯୋଜନା ପ୍ରଣୟନର ଆବଶ୍ୟକତା ରହିଛି ।

ବରିଷ୍ଠ ନାଗରିକମାନଙ୍କର ମଧ୍ୟ କିଛି ଦାୟିତ୍ୱ ରହିଛି । ପ୍ରଥମତଃ ସେମାନେ ଅତୀତକୁ ନେଇ ବଞ୍ଚି ରହିବାକୁ ଚାହାନ୍ତି । ଅତୀତ ବିଗତ । ଆଉ ଫେରି ଆସିବ ନାହିଁ । ଭବିଷ୍ୟତ ଅନିଶ୍ଚିତ । ତେଣୁ ବର୍ତ୍ତମାନ ସହିତ ନିଜକୁ ଖାପ ଖୁଆଇ ବଞ୍ଚି ରହିବା ଉଚିତ । ସମାଜର ଗଠନମୂଳକ

କାର୍ଯ୍ୟରେ ବରିଷ୍ଠ ନାଗରିକର ଭୂମିକା ରହିଛି । ଭୁବନେଶ୍ୱର ଓ କଟକରେ ବହୁ ଶିକ୍ଷିତ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଅବସର ଗ୍ରହଣ ପରେ ଗୋଟିଏ ଗୋଟିଏ ଦ୍ୱୀପ ଭଳି ଜୀବନ ଯାପନ କରୁଛନ୍ତି । କୌଣସି ସମ୍ପର୍କ ନାହିଁ ବାହାର ଜଗତ ସହିତ । ନିଃସଙ୍ଗ ଜୀବନର ଚାରିପଟେ ବିଷାଦର ବିସ୍ତୃତ ସମୁଦ୍ର । ଏଭଳି ପରିସ୍ଥିତି ପାଇଁ ସେମାନେ ହିଁ ବିଶେଷ ଭାବରେ ଦାୟୀ । ନିଜ ପଦବୀର କ୍ଷମତା ବଳରେ ନିଜକୁ ସମାଜଠୁ ଦୂରତ୍ୱ ବଢ଼ାଇବାରେ ପ୍ରୟାସର ପରିଣତି ସେମାନେ ଏବେ ଅଙ୍ଗେ ନିଭାଉଛନ୍ତି ।

ଶରୀର ଓ ମନ ଶକ୍ତିର କ୍ଷୟପ୍ରାପ୍ତିର ପ୍ରଭାବ ଏବଂ ମର୍ଯ୍ୟାଦାରୁ ବଞ୍ଚିତ ହେବାର କଳ୍ପିତ ଚିନ୍ତାଧାରାରୁ ଉର୍ଦ୍ଧ୍ୱରେ ରହି ନିଜର ଆତ୍ମ ବିଶ୍ଳେଷଣ କରିବାର ସମୟ ବର୍ତ୍ତମାନ ଉପସ୍ଥିତ । ସମାଜର ମର୍ଯ୍ୟାଦା ପାଇବାକୁ ହେଲେ ସୃଜନଶୀଳତାରେ ନିଜକୁ ନିୟୋଜିତ କରିବା ଶ୍ରେୟସ୍କର । ଯେ କୌଣସି ସୁସ୍ଥବ୍ୟକ୍ତି ପରିଣତ ବୟସରେ ବିନା ପଦବୀ ଏବଂ ପାରିଶ୍ରମିକରେ ନିଜକୁ ବ୍ୟସ୍ତ ରଖିପାରେ ।

ମୁମ୍ବାଇରେ ମେ ମାସ ପ୍ରଥମ ସପ୍ତାହରେ ଏକ ନୂତନ ପ୍ରକଳ୍ପର ପରୀକ୍ଷା ଆରମ୍ଭ ହୋଇଛି । ମୁମ୍ବାଇ ପୁଲିସ୍ ଟାଇମ୍ସ ଅଫ ଇଣ୍ଡିଆ ସହଯୋଗରେ ଆରମ୍ଭ କରିଛି 'ଏଲ୍ଡର୍ ଲାଇନ୍' ବରିଷ୍ଠ ନାଗରିକଙ୍କ ଉଦ୍ଦେଶ୍ୟରେ । ପ୍ରୟୋଜନ ଅନୁଯାୟୀ ଏ ପ୍ରକଳ୍ପ ଦ୍ୱାରା ବରିଷ୍ଠ ନାଗରିକମାନେ ଡ଼ାକ୍ତର, କାଉନସିଲର, ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ସ୍ୱେଚ୍ଛାସେବୀମାନଙ୍କର ସହଯୋଗ ଏବଂ ସାହାଯ୍ୟ ଟେଲିଫୋନ ମାଧ୍ୟମରେ ପାଇପାରିବେ । ଏଥିପାଇଁ ଦରକାର ପୁଲିସ୍ ଓ ବରିଷ୍ଠ ନାଗରିକଙ୍କ ମଧ୍ୟରେ ଯଥାର୍ଥ ସମନ୍ୱୟ । ଏଥିପାଇଁ ବରିଷ୍ଠ ନାଗରିକମାନେ ଥାନାରେ ନିଜ ନାମ ରେଜିଷ୍ଟ୍ରୀ କରିବାର ବ୍ୟବସ୍ଥା ହେବା ଉଚିତ, ଯଦ୍ୱାରା ସୁଯୋଗ କିମ୍ବା ଜରୁରୀ ପରିସ୍ଥିତିରେ ବରିଷ୍ଠ ନାଗରିକ ଫୋନ କଲେ ପୁଲିସ ଅବିଳମ୍ବେ ଘଟଣାସ୍ଥଳରେ ପହଞ୍ଚି ପରିସ୍ଥିତିର ମୁକାବିଲା କରିପାରିବ । ସେଇଭଳି ସ୍ଥାନୀୟ ଯୁବକ ଯୁବତୀ ନିର୍ଦ୍ଦିଷ୍ଟ ୱେବ୍‌ସାଇଟ୍‌ରେ ନିଜକୁ ସ୍ୱେଚ୍ଛାସେବୀ ରୂପେ ସାମିଲ କରିବେ,ଯେଉଁମାନଙ୍କୁ ବରିଷ୍ଠ ନାଗରିକଙ୍କୁ ସାହାଯ୍ୟ ପାଇଁ ଡ଼କା ଯାଇପାରିବ ।

ଏ ପ୍ରକଳ୍ପର ସଫଳତା ପାଇଁ ଅତ୍ୟାଧୁନିକ ଟ୍ରାକିଙ୍ଗ ସିଷ୍ଟମ ପ୍ରୟୋଗର ପରିକଳ୍ପନା କରାଯାଇଛି । ଯଦ୍ୱାରା ଫୋନ ମିଳିବା ସଂଗେ ସଂଗେ ବିପର୍ଯ୍ୟସ୍ତ ବରିଷ୍ଠ ନାଗରିକଙ୍କର ଅବସ୍ଥିତି ନିର୍ଭୁଲ ଭାବରେ ସମ୍ପୂର୍ଣ୍ଣ ବିବରଣୀ ସହ କମ୍ପ୍ୟୁଟରରେ ଜାଣିହେବ । ତତ୍‌କ୍ଷଣାତ୍ ପୁଲିସ୍ ଥାନା ପାଖରେ ଥିବା ସ୍ୱେଚ୍ଛାସେବୀଙ୍କୁ ଯୋଗାଯୋଗ କରିବ । ସ୍ୱେଚ୍ଛାସେବୀଙ୍କ ସମ୍ମତି ଓ ଅସମ୍ମତି ଜାଣିବା ପରେ ଦରକାର ପଡ଼ିଲେ ସେମାନଙ୍କର ଅନୁପସ୍ଥିତିରେ ପୁଲିସ ନିଜ ପ୍ରତିନିଧି ପଠାଇବେ । ଏ ଯୋଜନାର ସଫଳତା ପାଇଁ ସୁରକ୍ଷା ଦୃଷ୍ଟିରୁ ସ୍ୱେଚ୍ଛାସେବୀମାନଙ୍କୁ ପ୍ରଥମରୁ ପରୀକ୍ଷା କରାଯାଇ ସେମାନଙ୍କର ଯୋଗ୍ୟତା ଓ ଉପଯୋଗିତା ଦୃଷ୍ଟିରେ ରଖି ଯୋଜନାଭୁକ୍ତ

କରାଯିବ । ସେମାନେ ମଧ୍ୟ ସପ୍ତାହର କେଉଁ ଦିନ ଓ କେଉଁ ସମୟରେ ଉପଲବ୍ଧ ହୋଇପାରିବେ ତା'ର ସୂଚନା ପୂର୍ବରୁ ଦେବେ । ସ୍ୱେଚ୍ଛାସେବୀମାନଙ୍କୁ ପରିଚୟ ପତ୍ର ପୁଲିସ ତରଫରୁ ପ୍ରଦାନ କରାଯିବ ।

ସ୍ୱାସ୍ଥ୍ୟ ଜନିତ ଜରୁରୀକାଳୀନ ପରିସ୍ଥିତି, ଚୋରି, ଡକାୟତି, ନିଃସଙ୍ଗତା, ବିଷାଦଗ୍ରସ୍ତ ମାନସିକ ସ୍ଥିତିରେ ପୁଲିସ ଓ ସ୍ୱେଚ୍ଛାସେବୀ ବରିଷ୍ଠନାଗରିକଙ୍କୁ ଜରୁରୀକାଳୀନ ଭିତ୍ତିରେ ସେବା କରିବାର ପରିକଳ୍ପନା ଏହି ପ୍ରକଳ୍ପର ଅନ୍ତର୍ଭୁକ୍ତ । ଏଭଳି ଉଦ୍ୟମ ଭୁବନେଶ୍ୱର, କଟକ ଓ ଅନ୍ୟାନ୍ୟ ସହରରେ ଆରମ୍ଭ ହେବା ଉଚିତ । ଗଣମାଧ୍ୟମ ମଧ୍ୟ ବରିଷ୍ଠ ନାଗରିକଗୋଷ୍ଠୀର ଉପଯୋଗିତା ସମ୍ବନ୍ଧରେ ଲୋକ ସଚେତନତା ସୃଷ୍ଟି କରନ୍ତୁ । ପରିବାରର ମୁଖିଆ, ସ୍କୁଲ କଲେଜ ଶିକ୍ଷକମାନଙ୍କର ବୟସ୍କଙ୍କ ପ୍ରତି ସମ୍ମାନ, ଶାଳୀନତା ପ୍ରଦର୍ଶନ ଆମ ସଂସ୍କୃତି ଓ ଐତିହ୍ୟର ଏକ ଅଂଶ । ସମସ୍ତ ବାଧା ସତ୍ତ୍ୱେ ସେମାନେ ତା ଜାହିର କରିବା ଉଚିତ । ବରିଷ୍ଠ ନାଗରିକର ସ୍ୱାଭୀମାନ, ସମ୍ମାନ ଓ ସୁରକ୍ଷା ବିଷୟରେ ସଚେତନତା ଓ ଆଚରଣ ହିଁ ସଭ୍ୟତାର ପରିଚାୟକ ।

❋❋❋

# ଓଡ଼ିଶାର ଅର୍ଥନୀତିରେ ପର୍ଯ୍ୟଟନର ଗୁରୁତ୍ୱ

ଓଡ଼ିଶାରେ ପର୍ଯ୍ୟଟନର ଅନ୍ତର୍ନିହିତ ଶକ୍ତି ବିଷୟରେ ବହୁ ପ୍ରବନ୍ଧ ଓ ନିବନ୍ଧ ପ୍ରକାଶିତ ହେଲାଣି । ପର୍ଯ୍ୟଟନସ୍ଥଳୀଗୁଡ଼ିକ ଉପରେ ମଧ୍ୟ ବହୁ ଆଲୋକପାତ କରାଗଲାଣି । ସରକାରଙ୍କ ପକ୍ଷରୁ ମଝିରେ ମଝିରେ ପର୍ଯ୍ୟଟନ ନୀତି ସ୍ଥିର ହୋଇ ଘୋଷଣା କରାଯାଏ ; କିନ୍ତୁ ଗତ ପଚାଶ ବର୍ଷ ଭିତରେ ଏହି ବିଷୟ ପ୍ରତି ସରକାରଙ୍କ ଉଦାସୀନତା ଓ ଦୂରଦୃଷ୍ଟିର ଅଭାବ ରହିଛି । ଜନସାଧାରଣଙ୍କର ମଧ୍ୟ ଏଥିପ୍ରତି କୌଣସି ଉତ୍ସାହ ନାହିଁ । ସାଧାରଣ ଲୋକମାନେ ପର୍ଯ୍ୟଟନ ପାଇଁ ଆଗ୍ରହୀ ନହେବାରୁ, ସବୁ ଥିବା ସତ୍ତ୍ୱେ ପର୍ଯ୍ୟଟନ କ୍ଷେତ୍ରରେ ଓଡ଼ିଶାର ଅଗ୍ରଗତି ନୈରାଶ୍ୟଜନକ ।

ବିଶେଷଜ୍ଞମାନଙ୍କ ଆକଳନ ଅନୁସାରେ ୨୦୦୬ ବେଳକୁ ବିଶ୍ୱ ପର୍ଯ୍ୟଟନ ଓ ଭ୍ରମଣଭିତ୍ତିକ ମୋଟ ଆୟ ୬୪୭୭.୨ ବିଲିୟନ ଡ଼ଲାରରେ ପହଞ୍ଚିଥିଲା । ଏହା ଫଳରେ କେବଳ ପର୍ଯ୍ୟଟନ କ୍ଷେତ୍ରରେ ୨୩୪ ନିୟୁତ ବ୍ୟକ୍ତିଙ୍କର କର୍ମନିଯୁକ୍ତି ହେବାର ସମ୍ଭାବନା ଥିଲା । ଏହି ନିଯୁକ୍ତି ବିଶ୍ୱର ସମସ୍ତ କ୍ଷେତ୍ରରେ ହେଉଥିବା ନିଯୁକ୍ତିର ପ୍ରାୟ ଆଠ ପ୍ରତିଶତ ହେବ । ବିଶେଷଜ୍ଞମାନଙ୍କର ଏହି ଆକଳନକୁ ଉପେକ୍ଷା କରିବାର କୌଣସି କାରଣ ନାହିଁ । ବିଶେଷକରି ଏହା ଯେତେବେଳେ ଅର୍ଥନୀତି ଓ ନିଯୁକ୍ତି ସହିତ ଜଡ଼ିତ ।

ଏହି ପରିପ୍ରେକ୍ଷୀରେ ଓଡ଼ିଶାର ପର୍ଯ୍ୟଟନ ଶିଳ୍ପକୁ ବିଚାର କଲେ ଜଣାଯିବ ଯେ ଆମ ରାଜ୍ୟକୁ ପ୍ରତ୍ୟେକ ବର୍ଷ ଆସୁଥିବା ପର୍ଯ୍ୟଟକଙ୍କ ସଂଖ୍ୟା ନଗଣ୍ୟ । ସରକାରୀ ପରିସଂଖ୍ୟାନ ପ୍ରକାଶିତ ହୋଇଥିବା ରିପୋର୍ଟରୁ ଜଣାଯାଏ ଯେ ବିଦେଶୀ ପର୍ଯ୍ୟଟକଙ୍କ ସଂଖ୍ୟା ୨୫୦୦୦ରୁ ୩୦୦୦୦ ଭିତରେ ସୀମିତ । ଏହା ବ୍ୟତୀତ ଦେଶୀୟ ପର୍ଯ୍ୟଟକମାନଙ୍କ ସଂଖ୍ୟା ଆନୁମାନିକ ୪୦ ଲକ୍ଷ । ଏହା ଭିତରୁ ଆମ ପ୍ରଦେଶର ପର୍ଯ୍ୟଟକଙ୍କ ସଂଖ୍ୟା ପ୍ରାୟ ୨୧ ଲକ୍ଷ । ଏ ପରିସଂଖ୍ୟାନର ସତ୍ୟତା ପ୍ରତି ମଧ୍ୟ ବିଶେଷଜ୍ଞମାନଙ୍କର ସନ୍ଦେହ ରହିଛି । କାରଣ ପର୍ଯ୍ୟଟକମାନଙ୍କ ଗଣନା କ୍ଷେତ୍ରରେ କୌଣସି ବୈଜ୍ଞାନିକ ସମ୍ମତ ପଦ୍ଧତି ଓଡ଼ିଶାରେ ବ୍ୟବହାର କରାଯାଏ ନାହିଁ । ଜଣେ ପୂର୍ବତନ ଓଟିଡ଼ିସି, ଏମଡ଼ିଙ୍କ ମତରେ ଏସବୁ ପରିସଂଖ୍ୟାନ ହେଉଛି କେବଳ କପୋଳକଳ୍ପିତ । ଭାରତକୁ ଆସୁଥିବା ବିଦେଶୀ ପର୍ଯ୍ୟଟକମାନଙ୍କର ମୋଟ ସଂଖ୍ୟା ତୁଳନାରେ ଓଡ଼ିଶାକୁ ଆସୁଥିବା ବିଦେଶୀ ପର୍ଯ୍ୟଟକଙ୍କ ସଂଖ୍ୟା ଏକ ଶତାଂଶରୁ ମଧ୍ୟ କମ୍ ।

ପର୍ଯ୍ୟଟନ ବିକାଶ ପାଇଁ ଏବଂ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବା ପାଇଁ ଆବଶ୍ୟକ ହେଉଛି ଏପରି ଦର୍ଶନୀୟ ସ୍ଥାନ, ଯାହା ପର୍ଯ୍ୟଟକ ନିଜ ରହିଥିବା ଜାଗାରେ ଦେଖିବାର ସୁଯୋଗ ପାଏନାହିଁ। ସେହିପରି ଗମନାଗମନ ଓ ଯୋଗାଯୋଗର ସୁବିଧା । ଯଥା ଆନ୍ତର୍ଜାତିକ ମାନର ଆଧୁନିକ ବିମାନବନ୍ଦର, ଦେଶର ବିଭିନ୍ନ ପ୍ରାନ୍ତରୁ ଟ୍ରେନ ଯୋଗାଯୋଗର ସୁବିଧା, ଆଧୁନିକ ରାସ୍ତାଘାଟ ଓ ଟେଲିଯୋଗାଯୋଗ ବ୍ୟବସ୍ଥାର ସୁବିଧା । ଏହା ବ୍ୟତୀତ ସୁବିଧାରେ ରହିବା ପାଇଁ ଆବାସ, ହୋଟେଲ,ଗେଷ୍ଟହାଉସ, ଇତ୍ୟାଦିର ନିରାପଦ ଓ ଉନ୍ନତମାନର ବନ୍ଦୋବସ୍ତ । ସ୍ଥାନୀୟ ଜନସାଧାରଣ ପର୍ଯ୍ୟଟକଙ୍କୁ ଉପକାରୀ ଏବଂ ବନ୍ଧୁ ବୋଲି ମନେକରିବା ବିଶେଷ ଆବଶ୍ୟକ। ପର୍ଯ୍ୟଟକଟି ନୂତନ ଜାଗାରେ ଅସହାୟ ହୋଇପଡ଼ିଲେ ତାକୁ ସାହାଯ୍ୟର ହାତ ବଢ଼ାଇ ଦେବା ନିତାନ୍ତ ଜରୁରୀ ।

ଉପରଲିଖିତ ମାନଦଣ୍ଡ ଅନୁଯାୟୀ ବିଚାର କଲେ କେବଳ ପ୍ରଥମଟି ବ୍ୟତୀତ ଅନ୍ୟ ତିନୋଟି କ୍ଷେତ୍ରରେ ଆମ ପ୍ରଦେଶର ପରିସ୍ଥିତି ଲଜ୍ଜାଜନକ । ଓଡ଼ିଶାରେ ବହୁ ଦର୍ଶନୀୟ ସ୍ଥାନ ରହିଛି, ମନ୍ଦିର, ମଠ, ବୌଦ୍ଧ, ଜୈନ, ହିନ୍ଦୁ କୀର୍ତ୍ତିରାଜି, ଘଞ୍ଚ ଜଙ୍ଗଲ, ଜଳପ୍ରପାତ, ବିରଳ ପଶୁପକ୍ଷୀ, ନଦୀ, ହ୍ରଦ, ବେଳାଭୂମି ଇତ୍ୟାଦି । ବିଭବଶାଳୀ ଐତିହ୍ୟ, ବିଶ୍ୱବିଖ୍ୟାତ ହସ୍ତ ଓ ତନ୍ତଶିଳ୍ପ, ସଂଗୀତ, ନୃତ୍ୟ, ଖାଦ୍ୟ ଓ ପର୍ବପର୍ବାଣିର ପରମ୍ପରା; କିନ୍ତୁ ଏଗୁଡ଼ିକ ଉପଯୋଗ କରିବାକୁ ହେଲେ ଯେଉଁ ଭିତ୍ତିଭୂମିର ଆବଶ୍ୟକତା ରହିଛି ସେ ବିଷୟରେ କେହି ଧ୍ୟାନ ଦେବାକୁ ପ୍ରସ୍ତୁତ ନୁହନ୍ତି ।

ନୀତି ନିର୍ଦ୍ଧାରକମାନଙ୍କର ଧାରଣା ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବାକୁ ହେଲେ ପାଞ୍ଚତାରକା ହୋଟେଲ ଓ ଗଲ୍ଫ କୋର୍ସର ନିର୍ମାଣ ଅଗ୍ରାଧିକାର ପାଇବା ଉଚିତ। ଜନସାଧାରଣଙ୍କ ଧାରଣା ବିଦେଶୀ ପର୍ଯ୍ୟଟକମାନେ ଯେହେତୁ ଧନୀ, ସେହି ଯୋଗୁ ସେମାନଙ୍କୁ ଠକିଦେଲେ ସେମାନେ କିଛି ଭାବିବେ ନାହିଁ । ଏ ଦୁଇଟିଯାକ ଧାରଣା କେବଳ ଭୁଲ ନୁହେଁ ଆମ ଅଜ୍ଞାନତାର ପରିଚାୟକ । ବେଶୀ ଭାଗ ପର୍ଯ୍ୟଟକ ମଧ୍ୟବର୍ଗର ଲୋକ । ସେମାନଙ୍କର ସମ୍ବଳ ମଧ୍ୟ ସୀମିତ । ଭ୍ରମଣ ଗୋଟାଏ ସଉକ । ଜିଜ୍ଞାସୁ ମନର ଲୋକମାନେ ନଜାଣିଥିବା ଜାଗା ଓ ଜିନିଷକୁ ଦେଖିବାକୁ ଓ ଜାଣିବାକୁ ସ୍ୱାଭାବିକ ଭାବରେ ଆଗ୍ରହୀ । ସେମାନଙ୍କର ପ୍ରୟୋଜନ ସାମାନ୍ୟ । ଅନାଡ଼ମ୍ବର, ପରିଷ୍କାର, ରୁଚିସମ୍ପନ୍ନ ଗ୍ରହଣୀୟ ଆବାସ ସେମାନଙ୍କର ଆବଶ୍ୟକ । ଅବଶ୍ୟ ଅନ୍ୟ କେତେକଙ୍କର ପାଞ୍ଚତାରକା ହୋଟେଲର ସୁଖ ଓ ସମ୍ଭୋଗର ଆବଶ୍ୟକତା ରହିଛି । ବେଶୀ ସଂଖ୍ୟାରେ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବାକୁ ହେଲେ ଉପର ଲିଖିତ ଦିଗଟି ପ୍ରତି ଧ୍ୟାନ ଦେବାକୁ ପଡ଼ିବ । ଉଭୟ ପ୍ରକାର ଆବଶ୍ୟକତା ମଧ୍ୟରେ ଭାରସାମ୍ୟ ରଖିବାକୁ ପଡ଼ିବ ।

ସେହିଭଳି ଓଡ଼ିଶାକୁ ଗମନାଗମନର ସୁବିଧା ଏ ପର୍ଯ୍ୟନ୍ତ ସନ୍ତୋଷଜନକ ଅବସ୍ଥାରେ ନାହିଁ । ବିଶେଷକରି ବିମାନଯାତ୍ରା ଓଡ଼ିଶା ପାଇଁ ଅତି ଦୁରୂହ ଓ ବ୍ୟୟବହୁଳ । ମେଟ୍ରୋଗୁଡ଼ିକ ସହିତ ଓଡ଼ିଶାର ଯୋଗାଯୋଗ ନଗଣ୍ୟ । ଟ୍ରେନ ଯୋଗାଯୋଗ ବର୍ତ୍ତମାନ ଆଗଠାରୁ ଭଲ; କିନ୍ତୁ ପ୍ରଦେଶର ରାସ୍ତାଘାଟର ଦୂରବସ୍ଥା ସମ୍ପର୍କରେ ନକହିଲେ ଭଲ । ଟେଲି କମ୍ୟୁନିକେସନ ପରିସ୍ଥିତି ମଧ୍ୟ ସନ୍ତୋଷଜନକ ନୁହେଁ । ବିମାନ ଚଳାଚଳ ବ୍ୟବସ୍ଥାର ଉନ୍ନତି ପାଇଁ ସରକାରୀ ସ୍ତରରେ ଜରୁରୀ ଉଦ୍ୟମ ହେବା ଆବଶ୍ୟକ । ସେଥିପାଇଁ ରାଜନୈତିକ ସ୍ତରରେ ନିଷ୍ପତ୍ତିର ପ୍ରୟୋଜନ ରହିଛି ; କିନ୍ତୁ ରାସ୍ତାଘାଟର ଉନ୍ନତିକରଣ ଏବଂ ଦର୍ଶନୀୟ ସ୍ଥାନଗୁଡ଼ିକୁ ଉନ୍ନତ ମାନର ସଡ଼କ ଦ୍ୱାରା ଯୋଗାଯୋଗ କରିବା ସମ୍ଭବ । ଏଥିପାଇଁ ଖାଲି ଇଚ୍ଛାଶକ୍ତି ଓ ସୁଚିନ୍ତିତ ପରିକଳ୍ପନାର ଅଭାବ ରହିଛି; କିନ୍ତୁ ଏ ସବୁର ଉନ୍ନତି ସତ୍ତ୍ୱେ ଯଦି ସ୍ଥାନୀୟ ଜନସାଧାରଣ ପର୍ଯ୍ୟଟକମାନଙ୍କ ପ୍ରତି ବନ୍ଧୁତ୍ୱପୂର୍ଣ୍ଣ ମନୋଭାବ ପୋଷଣ ନକରନ୍ତି, ତେବେ ପର୍ଯ୍ୟଟକର ମନରେ ଓଡ଼ିଶା ସମ୍ପର୍କରେ ସୁନ୍ଦର ଓ ସ୍ଥାୟୀ ଅନୁଭୂତି ଗଭୀର ରେଖାପାତ କରିବ ନାହିଁ ।

ପ୍ରଥମରେ ମନ୍ଦିରଗୁଡ଼ିକରେ ସେବକମାନଙ୍କର ଦୁର୍ବ୍ୟବହାର, ଦୌରାତ୍ମ୍ୟ ଏବଂ ଶୋଷଣ ବନ୍ଦ ହେବା ଉଚିତ । ଓଡ଼ିଶାର ମନ୍ଦିରଗୁଡ଼ିକୁ ଯେଉଁ ପର୍ଯ୍ୟଟକ ପ୍ରଦେଶ ବାହାରୁ ଆସନ୍ତି, ସେମାନେ ଦ୍ୱିତୀୟଥର ପାଇଁ ଆସିବାକୁ ଚିନ୍ତା ବି କରନ୍ତି ନାହିଁ । ନିଜର ବ୍ୟକ୍ତିଗତ ଅନୁଭୂତି ଯୋଗୁ ଏପରି ଘଟିଥାଏ; କିନ୍ତୁ ଅନୁମାନ କରନ୍ତୁ କେତେ ସଂଖ୍ୟାରେ ତୀର୍ଥଯାତ୍ରୀ ତିରୁପତି, ବୈଷ୍ଣୋଦେବୀ, ଶିରିଡ଼ି, ଗୁରୁବାୟୁର ପ୍ରଭୃତି ତୀର୍ଥସ୍ଥାନକୁ ପ୍ରତିବର୍ଷ ଯିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି । ଏହାର କେବଳ ଗୋଟିଏ କାରଣ ରହିଛି । ମନ୍ଦିର ସୁପରିଚାଳନା ଏବଂ ଏଥିସହିତ ସମ୍ପୃକ୍ତ ବ୍ୟକ୍ତିମାନଙ୍କର ଏ ବିଷୟରେ ସଚେତନ ହେବା । ପର୍ଯ୍ୟଟକଙ୍କର ସନ୍ତୋଷ ହିଁ ସମସ୍ତଙ୍କ ପାଇଁ ଉପକାରୀ । ଆମ୍ଭମାନଙ୍କର ବୁଝିବା ଉଚିତ ଯେ ପ୍ରଚୁର ସଂଖ୍ୟାରେ ପର୍ଯ୍ୟଟକଙ୍କର ଆଗମନରେ ହିଁ ରାଜ୍ୟର ଆୟବୃଦ୍ଧିର ସମ୍ଭାବନା ରହିଛି । ଆଧୁନିକ ବ୍ୟବସାୟ କ୍ଷେତ୍ରରେ ପ୍ରଚୁର ବିକ୍ରି ଓ ସ୍ୱଳ୍ପଲାଭ ରଖିବା ଉପରେ ବିଶେଷ ଭାବରେ ପ୍ରାଧାନ୍ୟ ଦିଆଯାଉଛି । ସେହିଭଳି ରାସ୍ତାଘାଟ ଅବରୋଧ କରି ପୂଜାପର୍ବ ନାମରେ ଚାନ୍ଦା ଆଦାୟ କରିବା, ଓଡ଼ିଶାରେ ଆୟ କରିବାର ଏକ ଅଭିନବ ପନ୍ଥାରେ ପରିଣତ ହେଲାଣି । ଏପରି ଘଟଣା ଅନ୍ୟ ପ୍ରଦେଶଗୁଡ଼ିକରେ ଦୃଷ୍ଟିଗୋଚର ହୁଏନାହିଁ । ଏସବୁ ବନ୍ଦ ନହେବା ପର୍ଯ୍ୟନ୍ତ ପର୍ଯ୍ୟଟନର ଅଭିବୃଦ୍ଧି ଚିନ୍ତା କରିବା ବୃଥା ହେବ । ପର୍ଯ୍ୟଟକ ଆମ ଦେଶ ତଥା ରାଜ୍ୟର ଅତିଥି । ଅତିଥି ସତ୍କାର ଓ ତାହାକୁ ସମ୍ମାନ ଦେବାର ପରମ୍ପରା ଓ ଐତିହ୍ୟ ବହୁ ପୁରାତନ । ସେ ଦିଗଟିକୁ ଜନସାଧାରଣ ବୋଧହୁଏ ଇତିମଧ୍ୟରେ ଭୁଲିଯାଇଛନ୍ତି ।

ପରିଚ୍ଛନ୍ନତା ଓ ଉତ୍ତମ ପରିମଳ ବ୍ୟବସ୍ଥାକୁ ଆମ୍ଭେମାନେ ପ୍ରାଧାନ୍ୟ ନଦେଇପାରୁ; କିନ୍ତୁ ପର୍ଯ୍ୟଟନର ବିକାଶ ଓ ସଫଳତା ପାଇଁ ଏହା ଏକ ମୌଳିକ ଆବଶ୍ୟକତା । ଆବାସସ୍ଥଳୀ,

ବେଳାଭୂମି, କାର୍ତ୍ତିରାଜି ଓ ଅନ୍ୟ ସବୁ ସ୍ଥାନରେ ସୌନ୍ଦର୍ଯ୍ୟକାରଣ ଓ ପରିଚ୍ଛନ୍ନତାର ମାନ ବୃଦ୍ଧି ଜରୁରୀକାଳୀନ ଭିତ୍ତିରେ ଆରମ୍ଭ ହେବା ଉଚିତ । ଏହା ସମ୍ଭବପର । ପର୍ଯ୍ୟଟନ ଓ ଜଙ୍ଗଲ ବିଭାଗ ଦ୍ୱାରା ପରିଚାଳିତ ପାନ୍ଥଶାଳା, ଯାତ୍ରୀନିବାସ, ଅତିଥିଶାଳା ଇତ୍ୟାଦି ସଂଖ୍ୟାରେ ଯଥେଷ୍ଟ ନୁହେଁ । ବ୍ୟକ୍ତିବିଶେଷଙ୍କ ଘର ବା ପୁରାତନ ରାଜପ୍ରାସାଦଗୁଡ଼ିକୁ ଏ ଦିଗରେ ଉପଯୋଗ କରିବା ସମ୍ପର୍କରେ ଚିନ୍ତା କରିବାର ମଧ୍ୟ ସମୟ ଆସିଛି । ଜବରଦଖଲର ଉଚ୍ଛେଦ ପାଇଁ ଦରକାର ଶୂନ୍ୟ ସହନଶୀଳତା । ଓଡ଼ିଶାରେ ପର୍ଯ୍ୟଟକଙ୍କ ପାଇଁ ଯେଉଁ ଗାଇଡ୍ ମିଳନ୍ତି ସେମାନଙ୍କର ଭିତରୁ ଅଧିକାଂଶଙ୍କର ତାଲିମ ଓ ଜ୍ଞାନର ଅଭାବ ରହିଛି । ସେମାନଙ୍କର ଭାଷାର ଦକ୍ଷତା ନାହିଁ ଏବଂ ସାହାଯ୍ୟକାରୀ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ସମ୍ପର୍କରେ ସେମାନେ ସଚେତନ ନୁହନ୍ତି । ସେଥିପାଇଁ ଘରୋଇ ଉଦ୍ୟୋଗ ଓ ସରକାରୀ ସ୍ତରରେ ତାଲିମ ବ୍ୟବସ୍ଥାର ପ୍ରଚଳନ କରିବାର ପ୍ରୟୋଜନ ରହିଛି । ବହୁ ଯୁବକ-ଯୁବତୀ ବେକାର ରହିବା ଅପେକ୍ଷା ଏହାକୁ ସାମୟିକ ପେସା ଭାବେ ଗ୍ରହଣ କରନ୍ତୁ । ଏଥିରେ ଭାରତୀୟ ଓ ବିଦେଶୀ ଭାଷା ଶିଖିବାର ସୁଯୋଗ ମଧ୍ୟ ମିଳିବ । ଭାରତର ଅର୍ଥନୀତିରେ ଉଦାରୀକରଣ ଯୋଗୁ ବିଦେଶୀ ବ୍ୟବସାୟିକ ଅନୁଷ୍ଠାନଗୁଡ଼ିକର ସମ୍ପ୍ରସାରଣ ହେବାରୁ ଆମ ପ୍ରଦେଶର ଯୁବକ ଯୁବତୀମାନଙ୍କର ଏ କ୍ଷେତ୍ରରେ ନିଯୁକ୍ତି ପ୍ରାପ୍ତିର ସମ୍ଭାବନା ଅଧିକ ରହିଛି ।

ସରକାରଙ୍କ ତରଫରୁ ରୁଷିଆ ଓ ଥାଇଲାଣ୍ଡ ପ୍ରଭୃତି ଦେଶର ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବାର ପ୍ରଚେଷ୍ଟା ଚାଲିଛି ବୋଲି ଗଣମାଧ୍ୟମରେ ପ୍ରକାଶ ପାଇଛି । ରୁଷିଆ ଓ ଥାଇଲାଣ୍ଡ ପର୍ଯ୍ୟଟକଙ୍କ ସଂଖ୍ୟା ବିଶ୍ୱ ପର୍ଯ୍ୟଟକମାନଙ୍କ ସଂଖ୍ୟାର ଅତି ନଗଣ୍ୟ ଅଂଶ । ଏହିସବୁ ଦେଶର ପର୍ଯ୍ୟଟକ ମିତବ୍ୟୟୀ । ବିଦେଶୀ ମୁଦ୍ରା ଓ ଯାତାୟାତର କଟକଣା ଯୋଗୁ ରୁଷିଆର ପର୍ଯ୍ୟଟକମାନେ ଅତୀତରେ ବିଦେଶ ଯାତ୍ରା କ୍ୱଚିତ କରୁଥିଲେ । ଏବେ ମଧ୍ୟ ରୁଷିଆର ସାଧାରଣ ଲୋକଟିଏ ରୋଜଗାର ଓ ଆୟ ଉଦ୍ଦେଶ୍ୟରେ ବିଦେଶକୁ ଯିବାକୁ ଚାହେଁ । ଏବେ ଯେଉଁମାନେ ରୁଷିଆର ଧନୀ ଶ୍ରେଣୀର ଲୋକ ସେମାନେ ଏତେ ଧନୀ ଯେ ତାଙ୍କର ସୁଖ ଓ ସମ୍ଭୋଗ ପାଇଁ ସୁଯୋଗ ଦେବାର ଭିତ୍ତିଭୂମି ଓଡ଼ିଶାରେ ନାହିଁ । ଥାଇଲାଣ୍ଡ ସାରା ପୃଥିବୀରୁ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରେ; କିନ୍ତୁ ଥାଇଲାଣ୍ଡ ଲୋକଙ୍କର ବିଦେଶ ଭ୍ରମଣ ଅତି ସୀମିତ ।

ବୌଦ୍ଧ ଧର୍ମାବଲମ୍ବୀ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବା ପାଇଁ ମଝିରେ ମଝିରେ ଆଲୋଚନା ହୁଏ । ଏହା ଅତି ଉତ୍ତମ ପ୍ରସ୍ତାବ । କିନ୍ତୁ ଦୁଃଖର ସହିତ ଲେଖିବାକୁ ପଡୁଛି ଯେ ଓଡ଼ିଶା ବାହାରେ ବହୁ କମ୍ ଲୋକ ଆମ ପ୍ରଦେଶର ବିଭବଶାଳୀ ବୌଦ୍ଧ ଐତିହ୍ୟ ବିଷୟରେ ସଚେତନ । ସେଥିପାଇଁ ପ୍ରଚାର ଓ ପ୍ରସାରର ଆବଶ୍ୟକତା ରହିଛି । 'ଓଡ଼ିଶା ଟୁରିଜିମ୍' ନାମରେ ଯେଉଁ ୱେବସାଇଟ୍ ଅଛି ତାହା ନିମ୍ନ ମାନର । ଏଥିରେ ଓଡ଼ିଶାର ପର୍ଯ୍ୟଟନ ସମ୍ପର୍କରେ ସମ୍ପୂର୍ଣ୍ଣ ଚିତ୍ର ମିଳେନାହିଁ ।

ଏହି ୱେବସାଇଟ୍ ତିଆରି ଓ ତା'ର ଉନ୍ନତି ପାଇଁ ପେସାଦାର ବିଶେଷଜ୍ଞମାନଙ୍କର ସାହାଯ୍ୟ ନେବାର ଆବଶ୍ୟକତା ରହିଛି । ବିଶ୍ୱର ବିଭିନ୍ନ ସ୍ଥାନରେ ଟୁର୍ ଅପରେଟର ଓ ପର୍ଯ୍ୟଟକଙ୍କ ପାଇଁ ଉଦ୍ଦିଷ୍ଟ ପ୍ରଦର୍ଶନୀ ଓ ସେମିନାରରେ, ସରକାର ଓ ଘରୋଇ ଉଦ୍ୟୋଗ ମିଳିତ ଭାବେ ଭାଗ ନେବା ଉଚିତ । ଡ଼ିଭିଡ଼ି, ପୋଷ୍ଟର, ପ୍ରଚାର ପୁସ୍ତିକା ଓ ବୁଲେଟିନ୍ ବହୁଳ ଭାବରେ ବଣ୍ଟା ହେବା ଉଚିତ । ଗଣମାଧମ ବିଶେଷ କରି ଇଲେକଟ୍ରୋନିକ ଗଣ ମାଧମରେ ଏ ସମ୍ପର୍କରେ ପ୍ରଚାରର ପ୍ରୟୋଜନ ରହିଛି । ଏହିସବୁ ପ୍ରଚାର ଉଚ୍ଚମାନର ହେବା ଦରକାର । ଜୈନ ଐତିହ୍ୟ ବିଷୟରେ ମଧ ବେଶୀ ପ୍ରଚାର ହେବା ଆବଶ୍ୟକ । ଏହା ଦେଶୀୟ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବ ।

ଆମ ପର୍ଯ୍ୟଟନର ବିକାଶ ପାଇଁ ରଣକୌଶଳ ସ୍ଥିର କଲାବେଳେ, ପ୍ରଥମେ ଆମେରିକା, ୟୁରୋପ, ଜାପାନ, ଗଲ୍ଫ ଦେଶମାନଙ୍କ ଉପରେ ପ୍ରାଧାନ୍ୟ ଦିଆଯିବା ଅପେକ୍ଷାକୃତ ଲାଭଜନକ ମନେହୁଏ । ଏ ଦେଶର ଲୋକେ ସ୍ୱଳ୍ପ ଏବଂ ବିଦେଶ ଭ୍ରମଣରେ ବେଶୀ ଆଗ୍ରହ ଦେଖାଇଛନ୍ତି ।

ପାରମ୍ପରିକ ପର୍ଯ୍ୟଟନସ୍ଥଳୀ ସହିତ ବର୍ତ୍ତମାନ ସୁଯୋଗ ଆସିଛି ଗ୍ରାମୀଣ ପର୍ଯ୍ୟଟନ, ସ୍ୱାସ୍ଥ୍ୟସେବା ପର୍ଯ୍ୟଟନ, ଐତିହ୍ୟ ପର୍ଯ୍ୟଟନ, ଆଡ଼ଭେଞ୍ଚର ଟୁରିଜିମ ଯଥା ଜଳକ୍ରୀଡ଼ା, ଟ୍ରେକିଂ ଇତ୍ୟାଦିର । ଐତିହ୍ୟ ପର୍ଯ୍ୟଟନ ମଧ ପରୋକ୍ଷ ଭାବେ ସେଗୁଡ଼ିକର ସଂରକ୍ଷଣରେ ସାହାଯ୍ୟ କରିବ । ସେହିଭଳି ଆଦିବାସୀ, ଜନଜାତିମାନଙ୍କର ଜୀବନପ୍ରଣାଳୀ, କଳା, ସଂଗୀତ, ନୃତ୍ୟ ମଧ ଆଜିକାଲି ବହୁ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରୁଛି । ସେସବୁ ସ୍ଥାନଗୁଡ଼ିକର ଭ୍ରମଣ ପାଇଁ ସୁଚିନ୍ତିତ ଯୋଜନା ପ୍ରଣୟନର ସମୟ ଆସିଛି । ଚିନ୍ତାଶୂନ୍ୟ କଠୋର ନୀତି ନିୟମକୁ କିଛି କୋହଳ କରି ବାସ୍ତବବାଦୀ ନୀତି ପ୍ରଣୟନ କରିବା ଏବେ ଆବଶ୍ୟକ । ମୌସୁମୀ ପର୍ଯ୍ୟଟନ କେତେକଙ୍କ ପାଇଁ ଏକ ନୂତନ ଅଭିଜ୍ଞତା ମଧ ହୋଇପାରେ ।

ପର୍ଯ୍ୟଟନ ଶିଳ୍ପର ସାମଗ୍ରିକ ବିକାଶ ପାଇଁ ଏକ ରଣକୌଶଳର ଲୋଡ଼ା ଅଛି । ପର୍ଯ୍ୟଟକଙ୍କ ପାଇଁ ଆକର୍ଷଣୀୟ ବ୍ୟବସ୍ଥା କରିବା, ବିଦେଶରେ ପର୍ଯ୍ୟଟକମାନଙ୍କ ପାଇଁ କିପରି ସୁବିଧା ସୁଯୋଗର ବ୍ୟବସ୍ଥା ହେଉଛି ସେ ସମ୍ପର୍କରେ ଜାଣି ଅଭିଜ୍ଞତା ହାସଲ କରିବାକୁ ହେବ ; କିନ୍ତୁ ଆରମ୍ଭରେ ସେସବୁ ସମ୍ଭବ ନୁହେଁ ।

ଶ୍ରୀଲଙ୍କା ବହୁ ପର୍ଯ୍ୟଟକଙ୍କୁ ଆକର୍ଷଣ କରୁଛି । ଶ୍ରୀଲଙ୍କା ସାର୍କର ସଦସ୍ୟ ଏବଂ ଦକ୍ଷିଣ ଏସିଆର ଗୋଟିଏ ରାଷ୍ଟ୍ର । କୋଡ଼ିଏ ବର୍ଷର ଗୃହଯୁଦ୍ଧ ସତ୍ତ୍ୱେ ୨୦୦୬ ମସିହାରେ (ସୁନାମି ପରବର୍ତ୍ତୀ ପରିସ୍ଥିତି ସତ୍ତ୍ୱେ) ପର୍ଯ୍ୟଟନ ଓ ଭ୍ରମଣ ମାଧମରେ ଶ୍ରୀଲଙ୍କାର ଆୟ ୩୪୬୦ ମିଲିୟନ ଡ଼ଲାର ଅର୍ଥାତ୍ ପ୍ରାୟ ୧୫୦୦୦ କୋଟି ଟଙ୍କା ହେବାର ଅଛି ।

ଏଥିଯୋଗୁ ବହୁ କର୍ମଯୋଗାଣ (ପ୍ରାୟ ୬ ଲକ୍ଷ) ସମ୍ଭବ ହୋଇଛି । କେବଳ ପର୍ଯ୍ୟଟନର ବିକାଶ ଯୋଗୁ ଏହା ସମ୍ଭବ ହୋଇଛି । କ୍ଷେତ୍ରଫଳ ଅନୁସାରେ ଶ୍ରୀଲଙ୍କା ଓଡ଼ିଶାଠାରୁ ଛୋଟ । ଲୋକସଂଖ୍ୟା ମଧ୍ୟ କମ୍ । ଆକର୍ଷଣୀୟ ପର୍ଯ୍ୟଟନ ସ୍ଥାନଗୁଡ଼ିକର ତୁଳନା କଲେ ଓଡ଼ିଶା ଓ ଶ୍ରୀଲଙ୍କାର ବିଶେଷ କିଛି ପ୍ରଭେଦ ନାହିଁ । ସେଥିପାଇଁ ଆମକୁ ବିଶ୍ଳେଷଣ କରିବାକୁ ପଡ଼ିବ । ଶ୍ରୀଲଙ୍କାର ଅର୍ଥନୀତିରେ ପର୍ଯ୍ୟଟନର ଅବଦାନ ଆମ ପ୍ରଦେଶ ତୁଳନାରେ ଏତେ ବ୍ୟାପକ ଏବଂ ସହଯୋଗ ହେତୁ ପର୍ଯ୍ୟଟନ ସେ ଦେଶରେ ଏତେ ଉନ୍ନତ ହୋଇପାରିଛି । କେବଳ ପର୍ଯ୍ୟଟନ ମାଧ୍ୟମରେ ଓଡ଼ିଶାର ଅର୍ଥନୀତିର ଛବିରେ ପରିବର୍ତ୍ତନ ସମ୍ଭବପର । ବାସ୍ତବତା ଦୃଷ୍ଟିରୁ ଦେଖିଲେ ଏହା ଏକ ସମ୍ଭବପର ପରିକଳ୍ପନା ।

ଦେଶୀୟ ପର୍ଯ୍ୟଟକଙ୍କୁ ମଧ୍ୟ ଅବହେଳା କରିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । ବର୍ତ୍ତମାନ ଓଡ଼ିଶାକୁ କିଛି ପର୍ଯ୍ୟଟକ ପଡ଼ୋଶୀ ରାଜ୍ୟ ଯଥା ପଶ୍ଚିମବଙ୍ଗ, ଝାଡ଼ଖଣ୍ଡ , ଛତିଶଗଡ଼ ପ୍ରଭୃତିରୁ ଭ୍ରମଣରେ ଆସୁଛନ୍ତି । ଦେଶର ଅନ୍ୟ ପ୍ରାନ୍ତରୁ ବହୁଳ ସଂଖ୍ୟାରେ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବାର ସୁଯୋଗ ଆସୁଛି । ଅର୍ଥନୀତିର ଉଦାରୀକରଣ ଓ ଜଗତୀକରଣ ଫଳରେ ମଧ୍ୟବର୍ଗଙ୍କ ସଂଖ୍ୟା ଭାରତରେ ଖୁବ୍ ଦ୍ରୁତଗତିରେ ବୃଦ୍ଧିପାଉଛି । ଖୁବ୍ ଅଳ୍ପ ବୟସରେ ପେସାଦାର ବ୍ୟକ୍ତିଙ୍କର ଉପାର୍ଜନ ଓ ଖର୍ଚ୍ଚ କରିବାର କ୍ଷମତା ଆଶାତୀତ ଭାବରେ ବୃଦ୍ଧି ପାଇଛି । ସେମାନଙ୍କର ସଂଖ୍ୟା କିଛି କମ୍ ନୁହେଁ । ସେମାନେ ଚାହାନ୍ତି ଆମୋଦ, ପ୍ରମୋଦ, ଆରାମ ଏବଂ ବିଶ୍ରାମ । ତା ସହିତ ସେମାନଙ୍କର ରହିଛି ଭ୍ରମଣର ପ୍ରବଳ ଇଚ୍ଛା । ଏ ଗୋଷ୍ଠୀଟିକୁ ଆକୃଷ୍ଟ କରିବାର ପ୍ରକ୍ରିୟା ଏବେଠାରୁ ଆରମ୍ଭ ହେବା ଉଚିତ ।

ବେଳାଭୂମି ପର୍ଯ୍ୟଟନ ବର୍ତ୍ତମାନ ସୁଦ୍ଧା ବିଶ୍ୱ ପର୍ଯ୍ୟଟନର ମୁଖ୍ୟ ଅଂଶ । ନିକଟ ଭବିଷ୍ୟତରେ ମଧ୍ୟ ଏହାର ପ୍ରାଧାନ୍ୟ ରହିବ । ଓଡ଼ିଶାର ସୁଦୂରପ୍ରସାରୀ ବେଳାଭୂମି, ତଟବର୍ତ୍ତୀ କୂଳ, ଲୁଣାଜଙ୍ଗଲର ବିକାଶ ଘଟାଇ ତାହାକୁ ପର୍ଯ୍ୟଟନ ଉପଯୋଗୀ କରିପାରିଲେ ସମଗ୍ର ବିଶ୍ୱରୁ ପର୍ଯ୍ୟଟକମାନଙ୍କୁ ବହୁ ସଂଖ୍ୟାରେ ଓଡ଼ିଶାକୁ ଆକୃଷ୍ଟ କରିବା ସହଜ ହେବ ।

ସର୍ବୋପରି ପର୍ଯ୍ୟଟନ ପ୍ରସାରରେ ଆଦାନ ପ୍ରଦାନ ଅବଶ୍ୟମ୍ଭାବୀ । ସେଥିପାଇଁ ସାମାନ୍ୟ ଉଦାର ମନର ପରିଚୟ ବାଞ୍ଛନୀୟ । ସଂସ୍କୃତି ଓ ଅପସଂସ୍କୃତିର ଦ୍ୱାହି ଦେଇ ସଂକୀର୍ଣ୍ଣତାରେ ପଡ଼ିରହିଲେ ପର୍ଯ୍ୟଟନର ପ୍ରଚାର ଓ ପ୍ରସାର ଅସମ୍ଭବ । ଘରର ସମସ୍ତ ଝରକା ବାହାରର ସତେଜ ହାୱା ପାଇଁ ଉନ୍ମୁକ୍ତ ରଖିବା ସଙ୍ଗେ ସଙ୍ଗେ ଝଡ଼ର ଝଲକରେ ପଦଚ୍ୟୁତ ଓ ଭାରସାମ୍ୟ ହରାଇବାର ସମ୍ଭାବନାକୁ ଏଡ଼ାଇଯିବା ହିଁ ଶ୍ରେୟସ୍କର ।



# ସରକାର, ଦୁର୍ନୀତି ଓ ଜଗତୀକରଣ

ଗୋଟିଏ ସରକାରର ମୁଖ୍ୟ କାର୍ଯ୍ୟ ବା ଉଦ୍ଦେଶ୍ୟ ହେଉଛି ଶାସନ କରିବା, ପ୍ରଜା ବା ନାଗରିକଙ୍କର ଧନ, ଜୀବନ ରକ୍ଷା କରିବା । ରାଜ୍ୟର ପ୍ରାକୃତିକ ସମ୍ପଦର ସୁରକ୍ଷା ପାଇଁ ପ୍ରବନ୍ଧ କରିବା ଏବଂ ଦେଶର ସୁରକ୍ଷା ପାଇଁ ପ୍ରତିଶ୍ରୁତିବଦ୍ଧ ହେବା । ଜନକଲ୍ୟାଣ ରାଷ୍ଟ୍ରର ପ୍ରତିଷ୍ଠାରେ ସରକାରଙ୍କ କାର୍ଯ୍ୟକଳାପର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିଲା — ମୁଖ୍ୟକାର୍ଯ୍ୟ ସହିତ ମିଶିଲା ନ୍ୟାୟ, ସମତା ଓ ସାମାଜିକ ତଥା ଅର୍ଥନୈତିକ ଦିଗଦର୍ଶନ ।

ଉପରଲିଖିତ ମାନଦଣ୍ଡ ଭିତରେ ଯଦି ପ୍ରଦେଶର ସରକାରଙ୍କର ମୂଲ୍ୟାଙ୍କନ କରାଯାଏ ତେବେ ଦୁଃଖର ସହ ଲେଖିବାକୁ ପଡୁଛି, ସରକାର ନିଜର ମୌଳିକ ଦାୟିତ୍ୱକୁ ପରିତ୍ୟାଗ କରିଛନ୍ତି । ନିକଟ ଅତୀତରେ ଯେଉଁସବୁ ଘଟଣା ଗଜପତି ଓ କୋରାପୁଟ ଜିଲ୍ଲାରେ ଏବଂ କଳିଙ୍ଗନଗରରେ ଘଟିଲା, କେତେକଙ୍କ ମତରେ ତାହା ପ୍ରମାଣ କଲା ଯେ ସରକାରଙ୍କର କର୍ତ୍ତୃତ୍ୱର ଗୁରୁତ୍ୱବୋଧ ହୁଏତ ଭୁବନେଶ୍ୱରର ଆଖପାଖ ଅଞ୍ଚଳରେ ସୀମିତ; କିନ୍ତୁ ଏ ସରକାରକୁ ସାବାସ ଦିଆଯିବ କେତେଗୋଟି ଭଲ କାର୍ଯ୍ୟ ପାଇଁ । ଯଥା- ସ୍ୱକୃତ ଅର୍ଥନୈତିକ ବିଶୃଙ୍ଖଳାରେ କିଛିଟା ଶୃଙ୍ଖଳା ଆଣିବା । ନିଷ୍ଠାର ସହିତ ଇ-ଗଭର୍ଣ୍ଣାସ ପ୍ରକ୍ରିୟାର ବେଗ ବଢ଼ାଇବା । ସୂଚନା ଅଧିକାର ଆଇନ ପ୍ରଚଳନ କରିବା ଏବଂ ମହିଳାମାନଙ୍କୁ କ୍ଷମତା ପ୍ରଦାନ ଓ ଅର୍ଥନୈତିକ ସ୍ୱାବଲମ୍ବୀ ହେବାର ପ୍ରୋତ୍ସାହନ ଓ ପ୍ରେରଣା । ନିଃସନ୍ଦେହରେ ଏହିସବୁ ପଦକ୍ଷେପ ସ୍ୱଚ୍ଛତା, ଉତ୍ତରଦାୟିତ୍ୱ ସହିତ ଦୁର୍ନୀତି ହ୍ରାସ କରିବାରେ ସମର୍ଥ ହେବ । ମନେହେଉଛି ଏ ସରକାରଙ୍କ ପାଖରେ ଦୁର୍ନୀତି ଅନ୍ୟ ବିଷୟଠାରୁ ଅଧିକତର ଗୁରୁତ୍ୱପୂର୍ଣ୍ଣ ବିଷୟ; କିନ୍ତୁ ଦୁର୍ନୀତିର ଚେର ଏତେ ବ୍ୟାପିଛି ଯେ ସରକାରୀ ଉଦ୍ୟମ ଖାଲି ଉପର ଠାଉରିଆ ଭଳି ଜଣାପଡୁଛି । ଦୁର୍ନୀତି ତା ବାଟରେ ଚାଲିଛି, ସରକାରଙ୍କ ଦୁର୍ନୀତି ବିରୋଧୀ ପଦକ୍ଷେପ ଓ ପ୍ରଚାର ତା ବାଟରେ ଚାଲିଛି । ଦୁର୍ନୀତି ସବୁ ସମୟରେ , ସବୁ ସମାଜରେ ଆବହମାନ କାଳରୁ ଥିଲା । ଦୁର୍ନୀତିର ରୂପ ଏବଂ ବ୍ୟାପକତା ବିଭିନ୍ନ ସମୟରେ, ବିଭିନ୍ନ ସ୍ଥାନରେ, ବିଭିନ୍ନ ସରକାରଙ୍କ ଆଭିମୁଖ୍ୟ ଉପରେ ନିର୍ଭର କରୁଥିଲା । ଦୁର୍ନୀତିର ସ୍ତର ଏବଂ ପରିମାଣ ମଧ୍ୟ ନିର୍ଭର କରୁଥିଲା ସରକାର କିଭଳି ଭାବେ ଏ ଅପରାଧକୁ ବିବେଚନା କରୁଥିଲେ । ଦୁର୍ନୀତି ବର୍ତ୍ତମାନ ଖାଲି ସରକାରୀ ଅଫିସରେ ସୀମାବଦ୍ଧ ନୁହେଁ । ଏହା ବର୍ତ୍ତମାନ ସର୍ବଗ୍ରାସୀ, ବିସ୍ତାରିତ

ଓ ବ୍ୟାପକ । ଘରୋଇ ସଂସ୍ଥା ଏଥିମଧ୍ୟରୁ ବାଦ୍ ପଡ଼ିବ ନାହିଁ । ଦୁର୍ନୀତି ବହୁ ପ୍ରକାରର - ଆମ ସମାଜରେ ପ୍ରଚଳିତ ଥିଲା ବିଭିନ୍ନ ରୂପରେ ଯଥା ଭେଟି, ବକ୍‌ସିସ, ନଜରାନା ଇତ୍ୟାଦି । ଏହା ଅର୍ଥ, ପ୍ରଦତ୍ତ ପଦାର୍ଥ, ପକ୍ଷପାତ ଅଥବା ପୃଷ୍ଟପୋଷକତାର ମଧ୍ୟ ରୂପ ନେଇପାରେ; କିନ୍ତୁ ବର୍ତ୍ତମାନ ଦୁର୍ନୀତି ଆଉ ଏକ ଶୈଳୀରେ ହେଉଛି । ଯାହାକୁ ସ୍ପିଡ୍ ମନି କୁହାଯାଏ । ଅର୍ଥାତ୍ କୌଣସି କାର୍ଯ୍ୟକୁ ତ୍ୱରାନ୍ୱିତ କରି ନିଷ୍ପତ୍ତି ନେବା ଅର୍ଥ ଲାଭରେ । ସେ ନିଷ୍ପତ୍ତିରେ ଭୁଲ ବାହାର କରିବା କିମ୍ବା ବ୍ୟକ୍ତିବିଶେଷକୁ ଅପରାଧୀ ବୋଲି ପ୍ରମାଣିତ କରିବା କଷ୍ଟ ।

ମୋର କୂଟନୀତିଜ୍ଞ ଜୀବନରେ ବିକଶିତ ଦେଶଗୁଡ଼ିକରେ ଏଭଳି ଅଭିଜ୍ଞତା ଖୁବ୍ କମ୍ ହୋଇଛି । ଦୈନନ୍ଦିନ ଜୀବନଯାପନ ପାଇଁ ସାଧାରଣ ନାଗରିକକୁ ଉତ୍କୋଚ ବା ଲାଞ୍ଚ ଦେବାକୁ ପଡ଼େନାହିଁ । ଜଳ ଓ ବିଦ୍ୟୁତ ସଂଲଗ୍ନ ପାଇଁ ହେଉ, ଘର ନକ୍ସା ଅନୁମୋଦନ ହେଉ କିମ୍ବା ଜମିର ମାଲିକନା ସ୍ୱତ୍ୱ ହେଉ ଅଥବା ପୁଲିସ ଷ୍ଟେସନରେ ଏଫଆଇଆର ଦାଖଲ କରିବା ହେଉ ବା ଡ୍ରାଇଭିଂ ଲାଇସେନ୍ସ ପ୍ରାପ୍ତ ପାଇଁ ହେଉ । ବିକଶିତ ଦେଶଗୁଡ଼ିକରେ ଶିକ୍ଷା ଅନୁଷ୍ଠାନରେ ଲାଞ୍ଚ ପ୍ରଥା ନାହିଁ କହିଲେ ଚଳେ । କଳ୍ପନା କରନ୍ତୁ ଏ ସବୁ ସେବା ପାଇଁ ଭାରତବର୍ଷରେ ଜଣେ ନାଗରିକକୁ କିଭଳି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ । ଗଣମାଧ୍ୟମରେ ପ୍ରକାଶ ପାଉଛି ପ୍ରବେଶିକା ପରୀକ୍ଷାରେ ଦୁର୍ନୀତି, ପରୀକ୍ଷାଖାତା ମୂଲ୍ୟାଙ୍କନରେ ଦୁର୍ନୀତି, ହସପିଟାଲରେ ଅପରେସନ ପାଇଁ ଲାଞ୍ଚ, ନିଯୁକ୍ତିରେ ଏଭଳି କି ଦାରିଦ୍ର୍ୟରେଖାର ଲୋକଙ୍କ ପାଇଁ ଚିଠା ପ୍ରସ୍ତୁତିରେ ମଧ୍ୟ ଦୁର୍ନୀତି ପରିବ୍ୟାପ୍ତ । ଏ ସବୁର ସମାପ୍ତି ହେବ ଲୋକ ସଚେତନତାରେ ଏବଂ ସାମାନ୍ୟ କଷ୍ଟ ସ୍ୱୀକାରରେ । ଦୁର୍ନୀତି ସହିତ ସାଲିସ ବଦଳରେ ଲୋକେ ଅସହଯୋଗ କରନ୍ତୁ । ସ୍ୱର ଉତ୍ତୋଳନ କରନ୍ତୁ ।

ସରକାର ମଧ୍ୟ ଦୁର୍ନୀତିକୁ ନିର୍ମୂଳ କରିବାର ପ୍ରତିଶ୍ରୁତି ପୂର୍ବରୁ ଦୁର୍ନୀତିକୁ ସର୍ବନିମ୍ନ ସ୍ତରକୁ ଆଣିବାରେ ପ୍ରଚେଷ୍ଟା କରିବା ଉଚିତ । ବିଶେଷକରି ଲୋକସମ୍ପର୍କରେ ଆସୁଥିବା ବିଭାଗଗୁଡ଼ିକରେ ଯଥା ପୁଲିସ, ରାଜସ୍ୱ, ସ୍ୱାସ୍ଥ୍ୟ ଇତ୍ୟାଦି । ଖାଦ୍ୟ ଅପମିଶ୍ରଣ, ଭେଜାଲ ଔଷଧ ଇତ୍ୟାଦି ମଧ୍ୟ ବ୍ୟାପକ ଦୁର୍ନୀତିର ସୂଚନା ଦିଏ । ଜନସାଧାରଣ ଏହା ବିରୋଧରେ ବିଧିବଦ୍ଧ ଭାବେ ସଂଗ୍ରାମ କରିବା ଦରକାର । ବିଧାନସଭାର ମୁଖ୍ୟ କାର୍ଯ୍ୟ ହେଲା- ଆଇନ ପ୍ରଣୟନ କରିବା ଏବଂ ସରକାରୀ କାର୍ଯ୍ୟକଳାପର ନିରୀକ୍ଷଣ ଓ ଯାଞ୍ଚ କରିବା ଯଦ୍ୱାରା ସୁନିଶ୍ଚିତ ଭାବେ ସରକାର ଗଣତାନ୍ତ୍ରିକ ପଦ୍ଧତିରେ ଲୋକଙ୍କର ଆଶା ଓ ଆକାଂକ୍ଷାକୁ ପୂରଣ କରିପାରିବେ; କିନ୍ତୁ ଆମ ପ୍ରଦେଶରେ ସରକାର ପକ୍ଷ ଭଳି ବିରୋଧୀ ଦଳମାନେ ମଧ୍ୟ ସେମାନଙ୍କର ଦାୟିତ୍ୱକୁ ପରିତ୍ୟାଗ କରିଛନ୍ତି । ଫଳରେ ବିଧାନସଭାରେ ବିଶୃଙ୍ଖଳା ଓ ଅରାଜକତା ଦୃଶ୍ୟମାନ ହେଉଛି । ରାଜନୈତିକ ଦଳମାନଙ୍କ ପାଇଁ ଦୁର୍ନୀତି ଆଉ ଏକ ବିଶେଷ ଆଲୋଚ୍ୟ ବିଷୟ ହୋଇ ରହିନାହିଁ । ଆଲୋଚନା, ତର୍କ ବିତର୍କ ଖାଲି ଉପରଠାଉରିଆ । ଯେ ପର୍ଯ୍ୟନ୍ତ ନିର୍ବାଚନ

ରାଜନୀତିରେ ଅର୍ଥ ଓ ବାହୁବଳର ପ୍ରାଧାନ୍ୟ ରହିବ, ଏ ଅବସ୍ଥାରେ ପରିବର୍ତ୍ତନର ସମ୍ଭାବନା କ୍ଷୀଣ । ନିର୍ବାଚନ ପଦ୍ଧତିରେ ସୁଧାର ଆଣିବା ବର୍ତ୍ତମାନ ଏକାନ୍ତ ଜରୁରୀ ।

ଶୁଣିବାକୁ ମିଳୁଛି ଦେଶର ନ୍ୟାୟାଳୟ ମଧ ଦୁର୍ନୀତିରୁ ମୁକ୍ତ ନୁହେଁ । ନ୍ୟାୟାଳୟର ଭୂମିକା ହେଉଛି ଯେ ଶାସକର କାର୍ଯ୍ୟକଳାପ ସମ୍ବିଧାନର ପରିଧି ଭିତରେ ଏବଂ ଆଇନସମ୍ମତ ହେବା ଦରକାର । ନ୍ୟାୟାଳୟ ବର୍ତ୍ତମାନ ଲକ୍ଷ ଲକ୍ଷ ବିଚାରାଧୀନ ମାମଲାରେ ପ୍ରାୟ ଶ୍ୱାସରୁଦ୍ଧ ଅବସ୍ଥାରେ । ଅନ୍ୟବାକ୍ୟରେ ଲୋକମାନଙ୍କ ପାଇଁ ନ୍ୟାୟ ଏକ ପ୍ରହେଳିକା ଓ ମରିଚୀକା ପରି । ଦୁର୍ନୀତିଗ୍ରସ୍ତ କର୍ମଚାରୀଙ୍କୁ ରାଜନୀତିଜ୍ଞ ଓ ଅଫିସରଙ୍କର ପୃଷ୍ଟପୋଷକତା ଜାରି ରହିଛି । ଜାଣିଶୁଣି କେସ୍‌ଗୁଡ଼ିକ ମଧରେ ଏଭଳି ତ୍ରୁଟି ରଖାଯାଉଛି ଯେଭଳି କେସ୍‌ଟିରେ ଦୋଷୀର ଦୋଷ ସାବ୍ୟସ୍ତ କରିବା ଦୁରୂହ ହେବ । ନିକଟ ଅତୀତରେ ସିବିଆଇ ଡ଼ାଇରେକ୍ଟର କ୍ଷୋଭ ପ୍ରକାଶ କରିଥିଲେ, ସିବିଆଇ କେସ୍‌ଗୁଡ଼ିକରେ ଆଇନ ପରାମର୍ଶଦାତାଙ୍କର ନିମ୍ନମାନର ପରାମର୍ଶ ହେତୁ ଦୋଷୀ ବା ଅଭିଯୁକ୍ତ ସହଜରେ ଦୋଷମୁକ୍ତିର ନିଷ୍ପତ୍ତି ପାଉଛି । ଭାରତବର୍ଷର ସମସ୍ୟା ହେଉଛି ଜଗୁଆଳିକୁ କିଏ ଜଗିବ ? ନିରୀକ୍ଷକକୁ କିଏ ନିରୀକ୍ଷଣ କରିବ ? ମୋ ଅଭିଜ୍ଞତାରେ ଲାଇସେନ୍ସ, ପରିମିଟ୍, କଣ୍ଟ୍ରୋଲ୍ ରାଜ୍‌ରେ ଦୁର୍ନୀତିର ମାତ୍ରା ବେଶୀ । ସୋଭିଏତ ୟୁନିୟନର ବିଲୟ ସେହି କାରଣରୁ । ସରକାରଙ୍କର ଦାୟିତ୍ୱ ସୁବିଧା ଓ ସୁଯୋଗ ସୃଷ୍ଟି କରାଇବା କୌଣସି କାର୍ଯ୍ୟର ସୁଚାରୁ ସମ୍ପାଦନ ପାଇଁ । ସେ ଦୃଷ୍ଟିରୁ ସରକାର ବିଦେଶ ନୀତି, ରକ୍ଷା ନୀତି,ମୁଦ୍ରା ଏବଂ କିଛି ଅତ୍ୟାବଶ୍ୟକ, ଅପରିହାର୍ଯ୍ୟ, ବିଭାଗ ଛଡ଼ା ଅନ୍ୟ ସବୁ ବିଭାଗରେ ଉଦ୍ୟମୀ, ଉଦ୍ୟୋଗୀଙ୍କୁ ସମର୍ଥନ ଓ ସାହାଯ୍ୟ କରିବା ଯଦ୍ୱାରା ନାଗରିକଙ୍କର ପ୍ରଗତି, ସମୃଦ୍ଧି ବିନା କୌଣସି ବାଧାରେ ସମ୍ଭବପର ହେବ । ଗୁଡ଼ ଗଭର୍ଣ୍ଣାନ୍ସର ମାନଦଣ୍ଡ ହେଉଛି କେତେ ଶୀଘ୍ର ସରକାରୀ ପ୍ରତିନିଧି ବିପତ୍ତିକାଳୀନ ପରିସ୍ଥିତିରେ ଜନସାଧାରଣଙ୍କ ପାଖରେ ସାହାଯ୍ୟ ନେଇ ପହଁଚିପାରିବେ କିମ୍ବା ଉନ୍ନୟନମୂଳକ କାର୍ଯ୍ୟରେ ସହଯୋଗ କରିପାରିବେ । ଅନ୍ୟ ଅର୍ଥରେ କେତେ ଶୀଘ୍ର ସେବା ପ୍ରଦାନ କରିବାର ଦକ୍ଷତା ସରକାରଙ୍କର । ବିଶ୍ୱସମାଜ ଏକ କ୍ଷୀପ୍ରବେଗରେ ପରିବର୍ତ୍ତନଶୀଳ, ବିବର୍ତ୍ତନଶୀଳ ସମୟ ଭିତରେ ଗତି କରୁଛି । ସୂଚନା ଓ ପ୍ରଯୁକ୍ତି ଟେକ୍ନୋଲୋଜି ବେଶି ଭାଗ ଲୋକଙ୍କର ଜୀବନଶୈଳୀରେ ଅଭୂତପୂର୍ବ ପରିବର୍ତ୍ତନ ଆଣିଛି । ଦୂରତ୍ୱ କମିଛି । କର୍ମଯୋଗାଣ ବିନା ଉନ୍ନୟନ, କାଗଜ ବିନା କାମ, ଅଫିସ ବିନା କାମ - ଏ ସବୁ ନୂତନ ବାସ୍ତବତା । ଜଗତୀକରଣ ଆଣିଛି ସନ୍ତୋଷ ସଙ୍ଗେ ଆଶଙ୍କା ଓ ଉଦ୍‌ବେଗ । ପାରମ୍ପାରିକ ସମାଜରେ ଆଣିଛି ଅସ୍ଥିରତା । ରାଷ୍ଟ୍ର ରାଷ୍ଟ୍ର ମଧରେ ଅସାମନ୍ୟତା । ଜଗତୀକରଣ ଏକ ସୁଯୋଗ ଏବଂ ଗୋଟିଏ ଚ୍ୟାଲେଞ୍ଜ ସମସ୍ତଙ୍କ ପାଇଁ । ବିଶେଷଜ୍ଞମାନଙ୍କ ମତରେ ଏକବିଂଶ ଶତାବ୍ଦୀରେ ଚୀନ ଓ ଭାରତ ଦୁଇଟି ମହାଶକ୍ତି ଭାବେ ରୂପାନ୍ତରିତ ହେବେ । ଜନସଂଖ୍ୟା ଯାହା ପ୍ରଗତିର ବାଧକ ଥିଲା ବର୍ତ୍ତମାନ ସହାୟକ ହେବ ।

ଏହି ପୃଷ୍ଠଭୂମିରେ ଆମ ପ୍ରଦେଶର ସରକାର ପରିବର୍ତ୍ତିତ ପରିସ୍ଥିତିର ମୁକାବିଲା କରିବା ପାଇଁ କି ପଦକ୍ଷେପ ଗ୍ରହଣ କରୁଛନ୍ତି ? ଏହି ପ୍ରଚଳିତ ଜଗତୀକରଣ ପ୍ରକ୍ରିୟା ଯାହା ସମଗ୍ର ବିଶ୍ୱର ସମୀକରଣ କରୁଛି, ସେଥିରେ ଆମ ସରକାର କିଭଳି ଭାବେ ପ୍ରଦେଶର ସ୍ୱାର୍ଥ ସୁରକ୍ଷିତ କରୁଛନ୍ତି ? ଏହି ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତରେ ସାମିଲ ହେବା ପାଇଁ ଆମ ସରକାରୀ କଳ ପ୍ରସ୍ତୁତ ତ ? ଜନସାଧାରଣ ବିଶ୍ୱବ୍ୟାପୀ ପରିବର୍ତ୍ତନ ବିଷୟରେ ସଚେତନ ତ ? ଅମଲାତନ୍ତ୍ର ଆତ୍ମ ସଂଶୋଧନ ପାଇଁ ଉତ୍ସୁକ ତ ? ସମବେଦନାଶୀଳ ହେବା ପାଇଁ ସମ୍ମତ ତ ? ଗୋଟିଏ ନ୍ୟାୟପୂର୍ଣ୍ଣ, ରୁଚିପୂର୍ଣ୍ଣ, ପ୍ରଗତିଶୀଳ, ସ୍ୱଚ୍ଛଳ ସମାଜ ଗଠନ କରିବା ପାଇଁ ସାମ୍ବିଧାନିକ ନିୟମାନୁସାରେ କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ ତ ? ଯଦି ଉତ୍ତର 'ହଁ' ତେବେ ସ୍ୱାଭିମାନର ସହ ବଞ୍ଚିପାରିବା । ଯଦି ଉତ୍ତର ' ନା' ତେବେ ଅସ୍ମିତା ଲୁପ୍ତପ୍ରାୟ ହେବ ।

❋❋❋

# କେତୋଟି କଥା

ପ୍ରଥମେ ପୋସ୍କୋ, ପରେ ମିତ୍ତଲ ଏବଂ ବେଦାନ୍ତ, ଶେଷରେ ଅମ୍ବାନୀ । ଏହା ପୂର୍ବରୁ ଓଡ଼ିଶା ସରକାର ଇସ୍ପାତ ଓ ଆଲୁମିନିୟମ ପ୍ରଭୃତିରେ ଉତ୍ପାଦନ ପାଇଁ ପ୍ରାୟ ୪୩ଟି ଏମଓୟୁ ସ୍ୱାକ୍ଷର କରିଛନ୍ତି । ଏସବୁରେ ଆନୁମାନିକ ନିବେଶ ୨ ଲକ୍ଷ କୋଟିରୁ ଉର୍ଦ୍ଧ୍ୱ ହେବ । ଗଣମାଧ୍ୟମକୁ ବିଶ୍ୱାସ କଲେ ପ୍ରାୟ ୪ ଲକ୍ଷ କୋଟି ଟଙ୍କାର ନିବେଶ । ଚମତ୍କାର କଥା । ପରି ରାଇଜର କାହାଣୀ ଭଳି ଲାଗୁଛି । ମୁଖ୍ୟମନ୍ତ୍ରୀଙ୍କ ଭାଷାରେ ଓଡ଼ିଶା ହେବ ଏକ ଶକ୍ତିକେନ୍ଦ୍ର ।

ଗତବର୍ଷ କେନ୍ଦ୍ର ସରକାର ଜାତୀୟ ଇସ୍ପାତ ନୀତି ପ୍ରଣୟନ କରିଛନ୍ତି ଏବଂ ସେହି ନୀତି ସଠିକ ରୂପେ କାର୍ଯ୍ୟକାରୀ ହେଲେ ଅତ୍ୟାଧୁନିକ ଓ ଦକ୍ଷ ଇସ୍ପାତ ଶିଳ୍ପ ପ୍ରତିଷ୍ଠାର ସମ୍ଭାବନା ରହିଛି । ଦେଶରେ ଏବଂ ଅନ୍ତର୍ଜାତୀୟ ବଜାରରେ ଇସ୍ପାତର ଆଗାମୀ ଦିନର କ୍ରମବର୍ଦ୍ଧିଷ୍ଣୁ ଚାହିଦାକୁ ଦୃଷ୍ଟିରେ ରଖି ଏହି ନୀତି ପ୍ରଣୟନ କରାଯାଇଛି । ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ ଭାରତରେ ବିକାଶ ହାରରେ ୮-୧୦ ପ୍ରତିଶତ କରିବାକୁ ହେଲେ ଇସ୍ପାତ ଶିଳ୍ପର ବିଶେଷ ଭୂମିକା ମଧ୍ୟ ରହିବ; କିନ୍ତୁ ବର୍ତ୍ତମାନ ପରିସ୍ଥିତିର ଦୃଶ୍ୟକ୍ରମ ଉତ୍ସାହଜନକ ନୁହେଁ । ୨୦୦୫ ମସିହାରେ ଚୀନ ୩୫୦ ନିୟୁତ ଟନ ଇସ୍ପାତ ଉତ୍ପାଦନ କରୁଥିଲାବେଳେ ଭାରତର ଉତ୍ପାଦନ କ୍ଷମତା ଥିଲା ମାତ୍ର ୪୨ ନିୟୁତ ଟନ । ୨୦୨୦ ସୁଦ୍ଧା ଏହା ୧୧୦ ନିୟୁତ ଟନକୁ ବୃଦ୍ଧି କରିବାର ପରିକଳ୍ପନା କରାଯାଇଛି । ତୁଳନାତ୍ମକ ଭାବେ ଅନୁଧ୍ୟାନ କଲେ ଜଣାଯିବ ଯେ ଭାରତରେ ମୁଣ୍ଡପିଛା ଇସ୍ପାତ ବ୍ୟବହାର ୩୨ କିଲୋଗ୍ରାମ ଥିବାବେଳେ,ଚୀନରେ ଏହା ୧୮୦ କିଲୋଗ୍ରାମ । ବିକଶିତ ଦେଶରେ ମୁଣ୍ଡପିଛା ବ୍ୟବହାର ୪୦୦ କିଲୋଗ୍ରାମରୁ ବେଶୀ ।

ଓଡ଼ିଶାର ଗଚ୍ଛିତ ଖଣିଜ ପଦାର୍ଥ ଯଥା ଲୁହାପଥର, ବକ୍ସାଇଟ, କ୍ରୋମାଇଟ, କୋଇଲା,ମାଙ୍ଗାନିଜ ସମଗ୍ର ଦେଶର ଗଚ୍ଛିତ ଖଣିଜ ପରିମାଣ ଅନୁପାତରେ ଯଥାକ୍ରମେ ୩୨.୯%, ୯.୯୫%,୯୮.୪ %, ୨୪.୫% ଏବଂ ୬୭.୬% । ଏ ଆଙ୍କଡ଼ା ଉଲ୍ଲେଖ କରିବାର ଅର୍ଥ ହେଲା ଯେ ଓଡ଼ିଶାରେ ଗଚ୍ଛିତ ପ୍ରଚୁର ଖଣିଜ ପଦାର୍ଥର ସୁଦୁପଯୋଗ ହୋଇପାରିଲେ ନିଶ୍ଚୟ ଲୋକେ ଉପକୃତ ହେବେ ଏବଂ ପ୍ରଦେଶର ଅର୍ଥନୈତିକ ନକ୍ସା ବଦଳିଯିବ । ଦୁର୍ଭାଗ୍ୟର ବିଷୟ ତାହା ଏ ପର୍ଯ୍ୟନ୍ତ ହୋଇପାରିନାହିଁ । ଓଡ଼ିଶା ଦେଶର ସବୁଠାରୁ ଦରିଦ୍ରତମ ପ୍ରଦେଶ । ଏଠାରେ ଶିଶୁ ମୃତ୍ୟୁହାର ସର୍ବାଧିକ । ନିରକ୍ଷରତାରେ ମଧ୍ୟ ଅଗ୍ରଣୀ ।

ତେବେ ପ୍ରଦେଶର ସର୍ବାଙ୍ଗୀନ ଉନ୍ନୟନ ପାଇଁ ଆମର କେତେକ ମୌଳିକ ଚିନ୍ତାଧାରାରେ ସ୍ୱଚ୍ଛତା ଥିବା ଦରକାର । ରାଷ୍ଟ୍ରପତି କଲାମ ଓଡ଼ିଶାର ଏକ ସଭାରେ ତାଙ୍କ ଭାଷଣରେ କହିଥିଲେ ଯେ ପ୍ରଗତିର ଅର୍ଥ କେବଳ ଶିଳ୍ପୀକରଣ ନୁହେଁ, ଏହାର ଅର୍ଥ ମଧ୍ୟ ପରିବେଶ, ମୂଲ୍ୟବୋଧ । ରାଷ୍ଟ୍ରପତି ଓଡ଼ିଶାର ଜଣେ ଶୁଭାକାଙ୍‌କ୍ଷୀ ଏବଂ ପ୍ରଦେଶ ସହିତ ତାଙ୍କର ସମ୍ପର୍କ ନିବିଡ଼ । ତାଙ୍କର ଏ ଉକ୍ତିଟି ନୀତି ନିର୍ଦ୍ଧାରଣ ପାଇଁ ପ୍ରଯୁଜ୍ୟ । ବିକାଶ ପଦ୍ଧତିରେ ଭାରସାମ୍ୟ, ସର୍ବାଙ୍ଗୀନ ଉନ୍ନତି ପ୍ରକ୍ରିୟାକୁ ଜାରି ରଖିବା ଲକ୍ଷ୍ୟ ରହିବା ଉଚିତ । କିନ୍ତୁ ଜଣାପଡୁଛି ଯେ ଓଡ଼ିଶାରେ ଶିଳ୍ପାୟନ କ୍ଷେତ୍ରରେ ବୁଦ୍ଧିଜୀବୀ, ରାଜନୈତିକ ନେତାଙ୍କ ମତଭେଦ ରହିଛି । ଦୁଃଖର କଥା ଓଡ଼ିଶା ପାଇଁ କ'ଣ ମଙ୍ଗଳ, କେଉଁଟା ଭଲ କେଉଁଟା ମନ୍ଦ ଉପରେ ମଧ୍ୟ ଏକମତ ନାହିଁ । ତେଣୁ ଆମକୁ ପ୍ରଥମେ ଗ୍ରହଣ କରିବାକୁ ପଡ଼ିବ ଯେ ଓଡ଼ିଶାର ଜନସାଧାରଣଙ୍କ ସ୍ୱାର୍ଥ ଓ ହିତ ଦୃଷ୍ଟିରୁ ଶିଳ୍ପୀକରଣ ଅତ୍ୟନ୍ତ ଜରୁରୀ; କିନ୍ତୁ ତାହା ସର୍ବାଙ୍ଗୀନ, ସାମଗ୍ରିକ ଉନ୍ନୟନ, ପରିବେଶର ସୁରକ୍ଷା ସମେତ ହେବା ଉଚିତ । ଏଥିପାଇଁ ରାଜନୈତିକ ଦଳମତ ନିର୍ବିଶେଷରେ ଏନଜିଓ ଓ ଜନସାଧାରଣଙ୍କ ସହଯୋଗ ଏବଂ ସମର୍ଥନ ଆବଶ୍ୟକ ।

ସେହିଭଳି ଯେକୌଣସି ମେଗା ପ୍ରୋଜେକ୍ଟରେ ବା ବୃହତ୍ ପ୍ରକଳ୍ପରେ କିଛି ଲୋକେ ବିସ୍ଥାପିତ ହେବେ । କିଛି ପ୍ରାକୃତିକ ସମ୍ପଦ ଲୁପ୍ତ ପ୍ରାୟ ହେବ, ଏହା ଅବଶ୍ୟମ୍ଭାବୀ । ଏଭଳି ବିସ୍ଥାପନ ଓ କ୍ଷତି କିପରି ସର୍ବନିମ୍ନ ହେବ ତାହା ପ୍ରକଳ୍ପ ଦାୟିତ୍ୱରେ ଥିବା ଲୋକଙ୍କର କଳ୍ପନା, ଦକ୍ଷତା ଏବଂ ଜ୍ଞାନକୌଶଳ ଉପରେ ନିର୍ଭର କରେ । ଏଭଳି ମେଗା ପ୍ରୋଜେକ୍ଟରେ ଐତିହାସିକସ୍ଥଳୀ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ରହିଛି । ସେଗୁଡ଼ିକର ବୈଜ୍ଞାନିକ ପଦ୍ଧତିରେ ସ୍ଥାନାନ୍ତର ହେବା ଦରକାର । ଇଜିପ୍ଟରେ ଅତୀତରେ ସେଭଳି ସମସ୍ୟାର ସମାଧାନ ହୋଇପାରିଛି । ଅନ୍ୟାନ୍ୟ ଉଦାହରଣ ମଧ୍ୟ ରହିଛି ।

ବିସ୍ଥାପିତ ବ୍ୟକ୍ତିମାନଙ୍କୁ ଖାଲି ଆର୍ଥିକ କ୍ଷତିପୂରଣ ଯଥେଷ୍ଟ ନୁହେଁ । ତାଙ୍କର ଥଇଥାନ ପ୍ରତି ଦୃଷ୍ଟି ଦିଆଯିବା ପ୍ରୟୋଜନ ରହିଛି । ଆଦିବାସୀମାନଙ୍କର ମାଟି ଓ ପରିବେଶ ସହିତ ଏକ ଅଦ୍ଭୁତ ବନ୍ଧନ, ସ୍ନେହ, ଅନୁରକ୍ତି ରହିଛି । ତେଣୁ କ୍ଷତିପୂରଣ ନୀତି ପ୍ରଣୟନ କଲାବେଳେ ଏ ଦିଗଟିକୁ ଆଖିଆଗରେ ରଖିବାକୁ ପଡ଼ିବ । ଏହାର ଅର୍ଥ ନୁହେଁ ଯେ କତିପୟ ବ୍ୟକ୍ତି ନିଜର ସ୍ୱାର୍ଥସାଧନ ପାଇଁ ରାସ୍ତା ଅବରୋଧ କରି ସାଧାରଣ ଜନଜୀବନକୁ ଅକାମୀ କରିଦେବେ । ଯେଭଳି କଳିଙ୍ଗନଗରରେ ହୋଇଛି । ବିସ୍ଥାପିତ ନୀତିରେ କର୍ମନିଯୁକ୍ତି, ସେ ଅଞ୍ଚଳର ସର୍ବାଙ୍ଗୀନ ଉନ୍ନତି ପାଇଁ ଦୀର୍ଘକାଳୀନ ନୀତି ପ୍ରଣୟନ ହେବା ଦରକାର, ଶିଳ୍ପ ପ୍ରତିଷ୍ଠା ବେଳେ ଚତୁଃପାର୍ଶ୍ୱରେ କେତେ ବିକାଶ ଘଟିଲା, ସାଧାରଣ ଲୋକେ କେତେ ଲାଭବାନ ହେଲେ ବିଚାରକୁ ନେବାକୁ ପଡ଼ିବ । ସେହିଭଳି ଜମି ହେଉଛି ସୀମିତ । ତେଣୁ ଶିଳ୍ପ ପ୍ରତିଷ୍ଠାନକୁ ଜମି ଦେଲାବେଳେ ସାବଧାନତାର ସହିତ ବିଚାର ଆବଶ୍ୟକ । ଶିଳ୍ପ ପ୍ରତିଷ୍ଠା ପାଇଁ ଜମି ପ୍ରୟୋଜନଭିତ୍ତିକ ହେବା

ଉଚିତ । ଭୁବନେଶ୍ୱର ରାଜଧାନୀ ନିର୍ମାଣ ପରେ ଯେଉଳି ଭାବେ ଜମି ବଣ୍ଟନ କରାହୋଇଥିଲା ତା'ର କୁପରିଣାମ ଏବେ ଭୋଗିବାକୁ ପଡୁଛି । ତା'ର ଯେପରି ପୁନରାବୃତ୍ତି ନହୁଏ । ବର୍ତ୍ତମାନର ଶିଳ୍ପ ଅତ୍ୟାଧୁନିକ, ଏଥିରେ ଉତ୍ପାଦନର କ୍ଷମତା ଟେକ୍ନୋଲୋଜିଭିତ୍ତିକ, ଜଗତୀକରଣ ପ୍ରକ୍ରିୟାରେ ଅତ୍ୟାଧୁନିକ ନହେଲେ ପ୍ରତିଦ୍ୱନ୍ଦ୍ୱିତାମୂଳକ ହୋଇ ତିଷ୍ଠିପାରିବା କଷ୍ଟକର । ନିଯୁକ୍ତିର ପରିସର ମଧ୍ୟ ସୀମିତ । ପୋସ୍କୋ କାରଖାନାରେ ମାତ୍ର ୭୦୦୦ ନିଯୁକ୍ତିର ବିବରଣୀ ପରିକଳ୍ପନା କରାଯାଇଛି ବୋଲି ଶୁଣାଯାଉଛି । ତେଣୁ ଜନସାଧାରଣଙ୍କର ନିଯୁକ୍ତି ବିଷୟରେ ଅବାସ୍ତବ ଆକଳନ ସେମାନଙ୍କୁ ଭବିଷ୍ୟତରେ ନିରାଶ କରିପାରେ ।

ଅତୀତରେ କାରିଗରୀ କୌଶଳ, ପୁଞ୍ଜିର ଭିତ୍ତିଭୂମିର ଅଭାବ ଯୋଗୁ ଓଡ଼ିଶାର ଖଣିଜ ପଦାର୍ଥକୁ ଲିଜ୍ ଆକାରରେ ବିକ୍ରି କରାଯାଉଥିଲା । ସମୟ ବଦଳିଛି, ଭିତ୍ତିଭୂମି, କାରିଗରୀ କୌଶଳ, ପୁଞ୍ଜି ସଂଗ୍ରହର ଚିତ୍ରପଟରେ ବହୁ ପରିବର୍ତ୍ତନ ଆସିଛି । ତେଣୁ ଲିଜ୍ ବ୍ୟବସ୍ଥାରେ ମଧ୍ୟ ସୁଧାର ଆଣି ନୂତନ ନୀତି ପ୍ରଣୟନ ହେବା ଦରକାର । ଲିଜ୍ ପ୍ରଥାର ଯଥାର୍ଥତାକୁ ମଧ୍ୟ ବିଚାର କରିବା ଦରକାର ।

ଇସ୍ପାତ ଶିଳ୍ପର ଏ ଯେଉଁ ବିସ୍ଫୋରଣ ତା'ର ମୁଖ୍ୟ କାରଣ ହେଲା ଆନ୍ତର୍ଜାତିକ ବଜାରରେ ଚାହିଦା । ବିଶେଷକରି ଭାରତ ଓ ଚୀନର ଜିଡ଼ିପି ହାରରେ ଅଭୂତପୂର୍ବ ଅଭିବୃଦ୍ଧି । ଶିଳ୍ପୀକରଣ ଓ ଅର୍ଥନୈତିକ ଅଭିବୃଦ୍ଧି ପ୍ରକ୍ରିୟାରେ ଇସ୍ପାତ ଓ ସିମେଣ୍ଟ ପ୍ରଭୃତିର ପ୍ରୟୋଜନର ପରିଣାମ ଅତ୍ୟଧିକ ମାତ୍ରାରେ ବଢ଼ିଯାଏ । ତେଣୁ ଗୋଟିଏ ସ୍ତର ପରେ ଶିଥିଳତା ଆସିବାର ସମ୍ଭାବନା ରହିଛି । ମନେହେଉଛି ଚୀନର ଦ୍ରୁତ ଶିଳ୍ପୀକରଣରେ ସ୍ଥିରତା ଓ ଶିଥିଳତା ପ୍ରକିୟାର ପ୍ରାରମ୍ଭ ଶୀଘ୍ର ହେବ । ବ୍ରାଜିଲ, କୋରିଆରେ ସ୍ଥିରତା ପ୍ରାୟ ଆସିଗଲାଣି । ବିକଶିତ ଦେଶଗୁଡ଼ିକରେ ଇସ୍ପାତ ଶିଳ୍ପର ଏକତ୍ରୀକରଣ ଓ ଦୃଢ଼ୀକରଣର ସମୟ । ତେଣୁ ଦେଶୀୟ ବଜାର ଉପରେ ବେଶୀ ନିର୍ଭର କରିବାକୁ ପଡ଼ିବ । ସେତେବେଳେ ଓଡ଼ିଶାର ଏହି ଇସ୍ପାତ ପରିସ୍ଥିତି କ'ଣ ହେବ ? ବ୍ୟବସାୟୀକ ଦୃଷ୍ଟିରୁ ସାଧନାଯୋଗ୍ୟ, ବଂଚିବା, ସମର୍ଥ ହେବ ତ ? ନିକଟରେ ହରପ୍ରସନ୍ନ ମିଶ୍ରଙ୍କ 'ସମାଜ'ରେ ପ୍ରକାଶିତ ଏକ ସ୍ତମ୍ଭରେ ଗୋଟିଏ ନୂଆକଥା ଉଲ୍ଲେଖ କରାଯାଇଛି । ତାହାହେଲା କାଳକ୍ରମେ ଲୁହାର ଚାହିଦା ନିର୍ଦ୍ଦିଷ୍ଟ ପଦାର୍ଥ ମଧ୍ୟରେ ସୀମିତ ରହିବ । ପ୍ରତ୍ୟେକ ଅବସ୍ଥା ଚିରନ୍ତନ ଭାବିବା ଉଚିତ ନୁହେଁ । ବୈଜ୍ଞାନିକ ପ୍ରକ୍ରିୟା ଗତିଶୀଳ । ଇସ୍ପାତର ବିକଳ୍ପ ଅବାସ୍ତବ ନୁହେଁ ।

ସରକାର ଅତିମାତ୍ରା ଉତ୍ସୁକତାରେ ଆଉ ଗୋଟିଏ ଦିଗକୁ ମଧ୍ୟ ଭୁଲିଯାଇଛନ୍ତି । କଳିଙ୍ଗନଗର ଓ ପାରାଦ୍ୱୀପ ଏବଂ ସଂଲଗ୍ନିତ ସୀମିତ ପରିଧି ଭିତରେ ଏତେଗୁଡ଼ିଏ ମେଗାପ୍ରୋଜେକ୍ଟ ଶିଳ୍ପ ପ୍ରତିଷ୍ଠାନର ଉଦାହରଣ ପୃଥିବୀରେ ଅନ୍ୟତ୍ର ଦେଖିବାକୁ ମିଳେନାହିଁ । ଏହାର ପରିବେଶ ଉପରେ ପରିଣାମ ବିଷୟରେ କିଛି ଅନୁଧ୍ୟାନ ହେବାର ସୁଚନା ମିଳୁନାହିଁ ।

ଏସବୁ ଶିଳ୍ପ ଏବଂ ଏଥିସହିତ ଗଢ଼ିଉଠିବା ସହରଗୁଡ଼ିକର ଜଳ ପ୍ରୟୋଜନ ଓ ଯୋଗାଣ ଉତ୍ସ, ବର୍ଜିତ ବସ୍ତୁ ବିଷୟରେ କେହି ଚିନ୍ତା କରୁଛନ୍ତି କି ? ଏ ଦିଗଗୁଡ଼ିକ ଉପରେ ଧ୍ୟାନ ନଦେଲେ କିଛି ବର୍ଷ ପରେ ହିଁ ଉନ୍ନତମାନର ଅଞ୍ଚଳଗୁଡ଼ିକ ମରୁଭୂମିରେ ପରିଣତ ହେବ । ମେଗା ପ୍ରୋଜେକ୍ଟଗୁଡ଼ିକ ଉତ୍ପାଦନକ୍ଷମ ହେଲେ, ଛୋଟ ଇସ୍ପାତ କାରଖାନାଗୁଡ଼ିକର ଭବିଷ୍ୟତ କ'ଣ ହେବ ? ସେମାନେ ପ୍ରତିଦ୍ୱନ୍ଦ୍ୱିତାରେ ତିଷ୍ଠିପାରିବେ ତ ?

ବର୍ତ୍ତମାନ ମେଗା ପ୍ରୋଜେକ୍ଟ ପାଇଁ ପୋସ୍କୋ, ମିତ୍ତଲ ପ୍ରଭୃତି ଖଣି ଉପରେ ନିର୍ଭରତା ଯୋଗୁ ନିଜର ଦାବି ରଖିଛନ୍ତି । ଅନ୍ୟାନ୍ୟ ବହୁ ଶିଳ୍ପ ପ୍ରତିଷ୍ଠାନରେ ଲୁହାପଥରର ଚାହିଦା ରହିଛି । ଅନେକ ବରିଷ୍ଠ ସାମ୍ବାଦିକ ପ୍ରଶ୍ନ କରିଛନ୍ତି ଯେ ଲୁହାପଥରର ଚାହିଦା ଓ ଯୋଗାଣ କ୍ଷମତାରେ ତାରତମ୍ୟ ଓ ବ୍ୟବଧାନ ରହିଛି । ସରକାର ଯେଉଁସବୁ ଏମଓୟୁରେ ସ୍ୱାକ୍ଷର କରିଛନ୍ତି ସେ ସବୁ କମ୍ପାନୀର ସମୂହ ଲୁହାପଥର ଚାହିଦା ଓ ପ୍ରମାଣିତ ଗଚ୍ଛିତ ଲୁହାପଥରର ପରିସଂଖ୍ୟାନରେ ବହୁ ବ୍ୟବଧାନ ରହିଛି । ସରକାରଙ୍କ ତରଫରୁ ଏ ପର୍ଯ୍ୟନ୍ତ କୌଣସି ସନ୍ତୋଷଜନକ ଉତ୍ତର ମିଳିନି । ଫଳରେ ଲୋକଙ୍କ ମନରେ ସନ୍ଦେହ ରହିଛି ଶିଳ୍ପୀକରଣର କାର୍ଯ୍ୟକାରିତା ଉପରେ । ନିୟମିତ ଯୋଗାଣର ଉତ୍ସ ନଥିଲେ ଦିନେ ନା ଦିନେ ଏ ସବୁ ଅଞ୍ଚଳ ପରିତ୍ୟକ୍ତ ହୋଇଯିବ । ୟୁରୋପ ଓ ଆମେରିକାରେ ଏଭଳି ଉଦାହରଣ ରହିଛି ।

ଦେଶ ବିଦେଶର ପୁଞ୍ଜିପତିଙ୍କୁ ସାଦର ସମ୍ବର୍ଦ୍ଧନା ଜଣାଇ ଓଡ଼ିଶାର ଶିଳ୍ପୀକରଣ ପାଇଁ ସ୍ୱାଗତ କରିବା ଏକ କଥା; କିନ୍ତୁ ଓଡ଼ିଶାର ସ୍ୱାର୍ଥ ଦୃଷ୍ଟିରୁ ସରକାର, ରାଜନୈତିକ ଦଳ, ସିଭିଲ ସୋସାଇଟି, ଜନସାଧାରଣ ସର୍ବସମ୍ମତରେ ଏକ ଭିଜନକୁ କାର୍ଯ୍ୟକରିବା ଆଉ ଏକ କଥା ।



# ଭାଷା ଓ ଦୋଛକି

ଓଡ଼ିଆ ଭାଷା ଓ ସାହିତ୍ୟର ଭବିଷ୍ୟତ ସମ୍ବନ୍ଧରେ ଆଲୋଚନା ସଭା ସମିତି, ସାହିତ୍ୟ ପତ୍ରିକା ଓ ଗଣମାଧମରେ ବର୍ତ୍ତମାନ ଦେଖିବାକୁ ମିଳେ। ଏହା ଆତ୍ମବିଶ୍ୱାସ ଅଭାବର ଲକ୍ଷଣ ବୋଲି ମନେହୁଏ । ଗୋଟିଏ ଭାଷାର ସୁରକ୍ଷା ଓ ଅଭିବୃଦ୍ଧି ସେ ଅଂଚଳର ଲୋକମାନଙ୍କ ଉପରେ ନିର୍ଭର କରେ ।

ଲେଖିବା ଅନାବଶ୍ୟକ ଯେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରାଚୀନ ଏବଂ ସମୃଦ୍ଧ । ଭାରତବର୍ଷର ଅନ୍ୟାନ୍ୟ ଉନ୍ନତ ଭାଷା ଓ ସାହିତ୍ୟ ସହିତ ଯେ କୌଣସି ବିଭାଗରେ ତୁଳନୀୟ । ସତ କହିବାକୁ ଗଲେ ବହୁ ଆଂଚଳିକ ଭାଷା ତୁଳନାରେ ଓଡ଼ିଆ ଭାଷା ଅଧିକ ବିଜ୍ଞାନ-ସମ୍ମତ ଏବଂ ଏହାର ଐତିହ୍ୟ ବିଭବଶାଳୀ । ସାରଳା ଦାସଙ୍କ ମହାଭାରତର ମୌଳିକତା ଓ ରଚନାଶୈଳୀ ସମସାମୟିକ ଭାରତୀୟ ଭାଷାରେ କ୍ୱଚିତ୍ ଦେଖିବାକୁ ମିଳେ । ଆଧୁନିକ ଯୁଗରେ ମଧ ଫକୀରମୋହନ ଓ ଗୋପୀନାଥ ମହାନ୍ତିଙ୍କ କୃତୀରେ ମାନବ ଚରିତ୍ରର ନିଖୁଣ ବର୍ଣ୍ଣନ, ପର୍ଯ୍ୟବେକ୍ଷଣ ଓ ଚମତ୍କାର ଭାବେ ସେକାଳର ସମାଜ କିମ୍ବା ନିର୍ଦ୍ଦିଷ୍ଟ ଗୋଷ୍ଠୀର ଚିତ୍ରଣ ବିଶ୍ୱର ଯେ କୌଣସି ଭାଷାର ଶ୍ରେଷ୍ଠକୃତି ସହିତ ସମକକ୍ଷ । ସେଗୁଡ଼ିକ ସମ୍ଭବ ହେଲା ଓଡ଼ିଆ ଭାଷାର ପ୍ରାଚୁର୍ଯ୍ୟ ଓ ବିକଶିତତା ହେତୁ ।

କିନ୍ତୁ ଭାଷା ଓ ସାହିତ୍ୟ ନଦୀର ସ୍ରୋତ ଭଳି ଚିର ପ୍ରବାହିତ । ବିଭିନ୍ନ ଋତୁରେ ବିଭିନ୍ନ ଗତିପଥରେ ଏହା ଭିନ୍ନ ଭିନ୍ନ ରୂପ ନେଇ ବୈଚିତ୍ର୍ୟ ସୃଷ୍ଟିକରେ । ସେହି ସ୍ରୋତକୁ ଯଦି କୌଣସି ଯାଗାରେ ଅବରୁଦ୍ଧ କରାଯାଏ, ତେବେ ନଦୀ ତାର ଧର୍ମ ହରାଇବ । ଭାଷା ଓ ସାହିତ୍ୟର ଅଭିବୃଦ୍ଧି ପାଇଁ ପ୍ରୟୋଜନ ଉଦାର ମନୋଭାବ । ସମସାମୟିକ ସମାଜ, ମୂଲ୍ୟବୋଧ, ପରିସ୍ଥିତି, ଅନ୍ୟାନ୍ୟ ଭାଷା ଓ ସାହିତ୍ୟରୁ ଆହରଣ ପ୍ରତି ସମ୍ମାନ, ଶ୍ରଦ୍ଧା, ସହିଷ୍ଣୁତା ଭାଷା ଓ ସାହିତ୍ୟକୁ ଭବିଷ୍ୟତରେ ବଂଚିବାକୁ ସାହାଯ୍ୟ କରିବ । ଏ ଉକ୍ତିର ଉପାଦେୟତା ବର୍ତ୍ତମାନର ପରିସ୍ଥିତି ଉପରେ ଦୃଷ୍ଟିପାତ କଲେ ବୁଝିବା ସହଜ ହେବ ।

ଏକବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଜଗତୀକରଣ ଓ ଟେକ୍ନୋଲଜି ଜ୍ଞାନ ଓ କୌଶଳର ପ୍ରଚଣ୍ଡ ସ୍ରୋତ ପୁରାତନ ବ୍ୟବସ୍ଥା ବା ଢ଼ାଂଚାର ଯଥାର୍ଥତାକୁ ଚାଲେଂଜ କରୁଛି । ବୃହତ୍ ପୃଥିବୀ ବର୍ତ୍ତମାନ ଗୋଟିଏ ଗ୍ରାମରେ ପରିଣତ ହେବାକୁ ଲାଗିଲାଣି । ଏହି ପରିପ୍ରେକ୍ଷୀରେ ଓଡ଼ିଆ

ଭାଷା ଓ ସାହିତ୍ୟକୁ ମଧ୍ୟ ଆଦାନପ୍ରଦାନ ମାଧ୍ୟମରେ ପରିପୁଷ୍ଟ ଓ ସମୃଦ୍ଧ କରିବାକୁ ପଡ଼ିବ । ସତ କହିବାକୁ ଗଲେ ବର୍ତ୍ତମାନ ବିଶ୍ୱର ବ୍ୟବସ୍ଥା, ନୂତନ ଚିନ୍ତାକଳ୍ପ ଓ ଭାବନାକୁ ବହୁ ଭାରତୀୟ ଭାଷାରେ ପ୍ରକାଶ କରିବା କଷ୍ଟକର ହୋଇପଡୁଛି । ଇଂରାଜୀ ଭାଷାରେ ବର୍ତ୍ତମାନ ବହୁ ଭାରତୀୟ ଶବ୍ଦର ପ୍ରୟୋଗ ଦୃଶ୍ୟମାନ । ପ୍ରତିବର୍ଷ ସେ ସଂଖ୍ୟାରେ ବୃଦ୍ଧି ପାଉଛି । ଇଂରାଜୀ ଅଭିଧାନ ପ୍ରଣେତାମାନଙ୍କୁ ପ୍ରତିବର୍ଷ ନୂତନ ସଂସ୍କରଣରେ ନୂତନ ବିଦେଶୀ ଶବ୍ଦମାନ ସଂଯୋଗ କରିବାକୁ ପଡୁଛି । ଗୋଟିଏ ଦିଗରେ ଏକ ବିଶ୍ୱର ପରିକଳ୍ପନା ଓ ସାକାରର ସମ୍ଭାବନା, ଅନ୍ୟ ଦିଗରେ ବହୁ ସଂସ୍କୃତି , ଉପସଂସ୍କୃତି, ଭାଷାର ଅବକ୍ଷୟର ସୂଚନା ଦେଖିବାକୁ ମିଳୁଛି । ଇତିହାସର ଏହି ନିର୍ଣ୍ଣାୟକ ମୁହୂର୍ତ୍ତରେ ଗୋଟିଏ ଭାଷାର ବଂଚି ରହିବାର ଆଗ୍ରହ ସବୁ ବାଧାବିଘ୍ନର ସମ୍ମୁଖୀନ ହୋଇ ନିଜର ସ୍ଥିତିକୁ ବଜାୟ ରଖିବାର କ୍ଷମତା ଉପରେ ନିର୍ଭର କରେ ।

କମ୍ପ୍ୟୁଟର, ବିଜ୍ଞାନ, ଆଧୁନିକ ପରିଚାଳନା, ଅର୍ଥନୈତିକ ଚିନ୍ତାକଳ୍ପ ଗୁଡ଼ିକ ଆଧୁନିକ ଜୀବନର ଅଂଗ । ଏହାକୁ ବାଦଦେଇ ଆଧୁନିକ ଜୀବନଶୈଳୀର କଳ୍ପନା କରିହୁଏନା । ଜଟିଳ ଆଧୁନିକ ଜୀବନ, ମାନସିକ ଅବସ୍ଥା, ଆଚରଣ, ଭାବନାର ପରିପ୍ରକାଶ ସମୟ ସମୟରେ ଭାରତୀୟ ଭାଷାରେ କଠିନ । ତେଣୁ ଫ୍ରାନ୍ସ, କୋରିଆ ପ୍ରଭୃତି ଦେଶର ପୁରାତନ, ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟ ଗୁଡ଼ିକରେ ପାଠ୍ୟକ୍ରମରେ ଇଂରାଜୀ ଭାଷାର ପ୍ରଚଳନ ବହୁମାତ୍ରାରେ ବୃଦ୍ଧି ପାଉଛି । ଇୟୁରୋପର ବହୁ ଦେଶ ମଧ୍ୟ ଏ ଦିଗରେ ଅଗ୍ରଣୀ । ସାଂପ୍ରତିକ ଜଗତରେ ଅନ୍ୟମାନଙ୍କ ସମକକ୍ଷ ହେବାକୁ ହେଲେ ପରିବର୍ତ୍ତନର ସ୍ରୋତରୁ କିଛି ଗ୍ରହଣ କରିବାକୁ ପଡ଼ିବ । ଭାରତୀୟ ଇତିହାସରେ ମୋଗଲ ଓ ବ୍ରିଟିଶମାନେ ଆକ୍ରମଣକାରୀ,ଶାସକ ଭାବେ ଆସିଥିଲେ ମଧ୍ୟ ଭାରତୀୟ ସଂସ୍କୃତି, ବିଦେଶୀ ଶକ୍ତିର କିଛି ଅଂଶକୁ ଗ୍ରହଣ କରି ନିଜ ସାଂସ୍କୃତିକ ସ୍ୱାତନ୍ତ୍ର୍ୟତା ସହ ସମୃଦ୍ଧ କରିବାରେ ସକ୍ଷମ ହୋଇଥିଲେ । ଉତ୍କର୍ଷତା ଓ ଶ୍ରେଷ୍ଠତାକୁ ଗ୍ରହଣ କରି ଅନ୍ୟାନ୍ୟକୁ ପରିତ୍ୟାଗ କରିବା ପରିପକ୍ୱତା ଓ ବିଚକ୍ଷଣତାର ନିଦର୍ଶନ ହୋଇଥାଏ । ତେଣୁ ସମୟ ଆସିଛି ଓଡ଼ିଆ ଭାଷାର କିଛିଟା ଆଧୁନିକୀକରଣର ପ୍ରୟୋଜନିୟତା ଉପରେ ଧ୍ୟାନ ଦେବାପାଇଁ । ଜାପାନୀ ଓ ଅନ୍ୟାନ୍ୟ କେତେକ ଭାଷାରେ ସେଭଳି ଉଦ୍ୟମ ହୋଇଯାଇଛି । ଟେକ୍ନୋଲଜି ଓ ବିଜ୍ଞାନର ପ୍ରଗତି ଓ ତାର ସାମାଜିକ ବ୍ୟବସ୍ଥା ଉପରେ ପ୍ରଭାବକୁ ଗ୍ରହଣ କରି ସେ ଅନୁସାରେ ମଧ୍ୟ ଜାପାନୀ ଭାଷାରେ ରୂପାନ୍ତରିତ କରାଯାଇଛି । ଫଳରେ ନିଜ ସଂସ୍କୃତିକୁ ସ୍ୱାଭିମାନର ସହ ବଂଚାଇବା ସହିତ ସାଂପ୍ରତିକ ବିଶ୍ୱରେ ଖାପ ଖୁଆଇ ଚଳିବାର କୌଶଳ ଜାପାନ ସଫଳତାର ସହିତ କରିପାରିଛି ।

ଚରିତ୍ର ଗଠନର ନର୍ସରୀ ହେଉଛି ପରିବାର । ଭାଷା ପ୍ରତି ଆଦର, ସମ୍ମାନ ପରିବାର ଠାରୁ ଶିଶୁ ଲାଭ କରିଥାଏ । ବର୍ତ୍ତମାନ ପରିବାର ଦୃଶ୍ୟପଟରେ ଓଡ଼ିଆ ଭାଷା ଅବହେଳିତ ।

ସହରୀ ଜୀବନ ଏବଂ ମଧ୍ୟବିତ୍ତ ପରିବାର ସଂସ୍କୃତିରେ ଓଡ଼ିଆ ଭାଷାର ପ୍ରଚଳନ କମ ଦେଖିବାକୁ ମିଳୁଛି । ଘରେ ଇଂରାଜୀରେ କଥାବାର୍ତ୍ତା, ଓଡ଼ିଆଭାଷାକୁ ନ୍ୟୁନ ଭାବେ ଦେଖିବା ସାଧାରଣ କଥା । ଭୁବନେଶ୍ୱରରେ ବହୁ ନୂତନ ବ୍ୟବସାୟୀକ ଅନୁଷ୍ଠାନ, ବହୁରାଷ୍ଟ୍ରୀୟ କଂପାନୀ ଓ ସାଧାରଣ ସ୍ଥାନ ଯଥା ଏରୋଡ୍ରମ, ହୋଟେଲ, ଦୋକାନ ପ୍ରଭୃତିରେ ଓଡ଼ିଆ ତରୁଣ, ତରୁଣୀମାନେ ହିନ୍ଦି ବା ଇଂରାଜୀରେ କଥାବାର୍ତ୍ତା କରିବାକୁ ପସନ୍ଦ କରନ୍ତି । ଓଡ଼ିଆରେ କହିବାର ଦକ୍ଷତା ଓ ଯୋଗ୍ୟତା ଉପରେ ସେମାନଙ୍କର ନିଜ ଉପରେ ଆସ୍ଥା ନାହିଁ । ଫେରିବାଲାମାନେ ଘରେ ଘରେ ବୁଲି ହିନ୍ଦି କିମ୍ବା ବଙ୍ଗଳା ଭାଷାରେ ଜିନିଷ ବିକ୍ରୀ କରନ୍ତି । ଏଗୁଡ଼ିକ ଆମ ସହିଷ୍ଣୁତାର ନିଦର୍ଶନ ନା ଭାଷା ଓ ସଂସ୍କୃତି ଉପରେ ଅବିଚାର କହିବା ମୁସ୍କିଲ ।

ମନେ ଅଛି ଜାପାନରେ କୂଟନୀତିଜ୍ଞ ହିସାବରେ ରହଣୀ କାଳରେ ଗୋଟିଏ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୋର ପତ୍ନୀଙ୍କ ଦ୍ୱାରା ଜଣେ ସ୍ଥାନୀୟ ନୃତ୍ୟାଙ୍ଗନାକୁ ଟ୍ରେନିଂ ଦେଇ ଓଡ଼ିଶୀ ନୃତ୍ୟ ଶୈଳୀରେ ପରିବେଷଣ କରାଯାଇଥିଲା । ନୃତ୍ୟ ସହିତ ସଂଗୀତର ମାଧୁର୍ଯ୍ୟ ଏବଂ ଗୀତର ବ୍ୟାଖ୍ୟା ଯେତେବେଳେ କରାଗଲା, ସେତେବେଳେ ଦର୍ଶକ ଅଭିଭୂତ ହୋଇଥିଲେ । ପରବର୍ତ୍ତୀ ସମୟରେ ଦର୍ଶକମାନଙ୍କ ମଧ୍ୟରୁ କେତେକ ଓଡ଼ିଆ ଭାଷା ଓ ସାହିତ୍ୟ ଶିଖିବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଆମେରିକାରେ ମଧ୍ୟ ସୁଯୋଗ ମିଳିଥିଲା ଓଡ଼ିଆ ସଂସ୍କୃତି ବିଷୟରେ କିଛି କହିବାକୁ । ସେଥିରେ ଉପସ୍ଥିତ ଆମେରିକାବାସୀ ଆଚମ୍ବିତ ହୋଇଥିଲେ ଓଡ଼ିଆ ଭାଷା ଓ ସଂସ୍କୃତିର ସ୍ୱାତନ୍ତ୍ର୍ୟତା ଓ ସମୃଦ୍ଧଶାଳୀ ଐତିହ୍ୟ ପାଇଁ ।

ସମୟ ଆସିଛି ବିଶ୍ୱବ୍ୟବସ୍ଥାର ପରିବର୍ତ୍ତିତ ପରିସ୍ଥିତିରେ ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିବାରେ ସମସ୍ତଙ୍କର ସହଯୋଗ - ବ୍ୟକ୍ତି , ପରିବାର, ଶିକ୍ଷା ଅନୁଷ୍ଠାନ ଓ ଶେଷରେ ଟେକ୍ନୋଲଜି । ସାଂପ୍ରତିକ ଟେକ୍ନୋଲଜି ଭିତ୍ତିକ ସଭ୍ୟତା ଓ ଜୀବନଶୈଳୀରେ ପୃଥକତା ପରିବର୍ତ୍ତେ ପରସ୍ପର ନିର୍ଭରଶୀଳତାର କ୍ରମବର୍ଦ୍ଧିଷ୍ଣୁ ପ୍ରାଧାନ୍ୟତା ଉପଲବ୍ଧ ହୁଏ । ସାହିତ୍ୟ ଓ ଭାଷାର ସ୍ୱାତନ୍ତ୍ର୍ୟ ଓ ଅଭିବୃଦ୍ଧି ପାଇଁ ଆଦାନପ୍ରଦାନ ସହିତ ଓଡ଼ିଆଭାଷୀଙ୍କର ପୃଷ୍ଠପୋଷକତା ଓ ଆଗ୍ରହର ମଧ୍ୟ ପ୍ରୟୋଜନ ରହିଛି । ବ୍ୟକ୍ତିର ନୂତନ ଅର୍ଜିତ ଜ୍ଞାନ ସାହାଯ୍ୟରେ ପୃଥିବୀ ବ୍ୟାପୀ ସହଯୋଗିତାର ଯେଉଁ ହାୱା ଚାଲିଛି ସେଥିରେ ଓଡ଼ିଆ ଭାଷା ଓ ସାହିତ୍ୟର ମାନ୍ୟତା ପାଇଁ ଉଦ୍ୟମ ହେବା ଦରକାର । ଉଚ୍ଚକୋଟୀର ଅନୁବାଦ ଏହାକୁ କିଛି ଅଂଶରେ ସମାପନ କରିପାରିବ ଓ ବିଶ୍ୱଦରବାରରେ ପ୍ରତିଷ୍ଠିତ କରିପାରିବ ।

***

# ଓଡ଼ିଆ ସିନେମା – ବର୍ତ୍ତମାନ ଓ ସମ୍ଭାବନା

ବହୁ ବର୍ଷପରେ କିଛି ଓଡ଼ିଆ ଚଳଚ୍ଚିତ୍ର ଦେଖିବାର ସୁଯୋଗ ମିଳିଲା । ଓଡ଼ିଶା ବାହାରେ ବିଶେଷକରି ବିଦେଶରେ ଓଡ଼ିଆ ଚଳଚ୍ଚିତ୍ର ଦେଖିବାର ସମ୍ଭାବନା ନାହିଁ କହିଲେ ଚଳେ । ଗତ ଦୁଇବର୍ଷରେ ଯେତେଗୁଡ଼ିଏ ସିନେମା ଦେଖିଲି ସେଥିରୁ ମନେହେଲା ଓଡ଼ିଆ ସମାଜ ହିଂସାପ୍ରବଣ । ଚଳଚ୍ଚିତ୍ର ଗୁଡ଼ିକରେ ହିଂସାକୁ ପ୍ରାଧାନ୍ୟ ଦିଆଯାଉଛି ଏବଂ ଅତିରଂଜିତ କରାଯାଉଛି । ଏହା ବାସ୍ତବତାର ପ୍ରତିଛବି ନାଁ ବାସ୍ତବତାକୁ ଏହା ପ୍ରଭାବିତ କରୁଛି କହିବା କଷ୍ଟ । ମୋର ଧାରଣା ଥିଲା ଓଡ଼ିଆ ଲୋକେ ଶାନ୍ତିପ୍ରିୟ । ହିଂସାକୁ ଏତେ ଶୀଘ୍ର ଗ୍ରହଣ କରନ୍ତି ନାହିଁ । କିନ୍ତୁ ବର୍ତ୍ତମାନର ବେଶୀଭାଗ ଓଡ଼ିଆ ଚଳଚ୍ଚିତ୍ର ଗୁଡ଼ିକରେ ପ୍ରଥମରୁ ସମାପ୍ତି ପର୍ଯ୍ୟନ୍ତ ହିଂସାର ବ୍ୟାଖ୍ୟା । ସେଗୁଡ଼ିକ କାହାଣୀ ସହିତ ଖାପ୍ ଖାଉ ବା ନ ଖାଉ ତଥାପି ହିଂସାଭିତ୍ତିକ ଦୃଶ୍ୟ ସଂଶ୍ଳିଷ୍ଟ କରାଯାଉଛି । ଏହାର କାରଣ ବୋଧହୁଏ ଓଡ଼ିଆ ଚଳଚ୍ଚିତ୍ରର କାହାଣୀରେ ମୌଳିକତା, ନୂତନତ୍ୱ ବା ସୃଜନାତ୍ମକର ଘୋର ଅଭାବ । ଲାଗେ ବଲିଉଡ୍ କିମ୍ବା ପ୍ରାନ୍ତୀୟ ଚଳଚ୍ଚିତ୍ରରୁ ଫ୍ରେମ ପରେ ଫ୍ରେମ ଅନୁକରଣ କରି ଯେଣୁ ତେଣୁ ଗୋଟିଏ କାହାଣୀ ଗଢ଼ି ତଦନୁଯାୟୀ ଚିତ୍ରନାଟ୍ୟ ପ୍ରସ୍ତୁତ କରି, ଫିଲ୍ମ ପରିବେଷଣ କରି କିଛି ପଇସା ଉପାର୍ଜନ କରିବା ହିଁ ଲକ୍ଷ୍ୟ । ଏକଥା ଲେଖିଲାବେଳେ କହି ରଖିବାକୁ ଚାହେଁ ଯେ କେତେକ ନବାଗତ ଅଭିନେତା ଓ ଅଭିନେତ୍ରୀଙ୍କ ଅଭିନୟର ଅର୍ନ୍ତନିହିତ ଶକ୍ତିର ଆଭାସ୍ କିଛି ଫିଲ୍ମରେ ଦେଖିବାକୁ ମିଳୁଛି । ଭଲ କାହାଣୀ ଓ ନିର୍ଦ୍ଦେଶନାରେ ତାଙ୍କର ଟାଲେଣ୍ଟ ବା ସ୍ୱତନ୍ତ୍ର ଗୁଣର ବିକାଶ ସମ୍ଭବ ହେବ ।

ଚଳଚ୍ଚିତ୍ର ହେଉଛି ଭିଜୁଆଲ ବା ଦୃଷ୍ଟି ସଂକ୍ରାନ୍ତ କଳା ପ୍ରକାଶର ଏକ ଶକ୍ତିଶାଳୀ ମାଧ୍ୟମ । ଏହାର ତିନୋଟି ମୁଖ୍ୟ ବିଭାଗ ହେଲା -ଚିତ୍ରନାଟ୍ୟ, ନିର୍ଦ୍ଦେଶନା ଏବଂ ଫଟୋଗ୍ରାଫି । ଏ ବିଭାଗଗୁଡ଼ିକ ବିଶେଷ କରି କାହାଣୀ ଓ ଚିତ୍ରନାଟ୍ୟ ଯଦି ଦୁର୍ବଳ ହୁଏ ତେବେ ଫିଲ୍ମଟି ଲୋକାଦୃତ ହେବ ନାହିଁ । ଏହା ବାରବାର ପ୍ରମାଣିତ ହୋଇଛି ବକ୍ସ ଅଫିସରେ ।

ଶୁଣିବାକୁ ପାଇଲି ଯେ ଓଡ଼ିଆ ଚଳଚ୍ଚିତ୍ରର ପ୍ରଦର୍ଶନ ପାଇଁ ଆଉ ଏତେ ଅସୁବିଧା ନାହିଁ । ଅତୀତରେ ପ୍ରଦର୍ଶନ ପାଇଁ ସିନେମା ହଲ୍‌ଟିଏ ପାଇବା କଷ୍ଟକର ଥିଲା । ବିଶେଷକରି

ଛୋଟ ଛୋଟ ଟାଉନ ଓ ଗ୍ରାମାଂଚଳରେ ଓଡ଼ିଆ ସିନେମାର ଚାହିଦା ବର୍ତ୍ତମାନ ଅଛି । ଏପରିକି ହିନ୍ଦୀ ଫିଲ୍ମ ତୁଳନାରେ ପର୍ବପର୍ବାଣୀ ସମୟରେ ଓଡ଼ିଆ ଚଳଚ୍ଚିତ୍ରର ଚାହିଦା ବେଶୀ ଓ ବ୍ୟବସାୟୀକ ଦୃଷ୍ଟିରୁ ଖୁବ୍ ଲାଭଜନକ । ଏହା ଯଦି ସତ୍ୟ ହୋଇଥାଏ ତେବେ ଉତ୍କୃଷ୍ଟମାନର ଚଳଚ୍ଚିତ୍ର ନିର୍ମାଣ ପାଇଁ ବାଧା କେଉଁଠାରେ ?

ଓଡ଼ିଆ ପରିବାର, ସଂସ୍କୃତି, ଜାତୀୟ ଜୀବନ, ଚରିତ୍ରର ଏକ ନିର୍ଦ୍ଦିଷ୍ଟ ରୂପ ଅଛି । ସମୟ ସହିତ ଏଥିରେ ପରିବର୍ତ୍ତନ ଆସିଛି କିନ୍ତୁ ଏହା ନିଉୟର୍କ, କିମ୍ବା ଲଣ୍ଡନର ଜୀବନ ନୁହେଁ । ତେଣୁ ଚଳଚ୍ଚିତ୍ରରେ ଆମ ସମାଜ ଓ ସଂସ୍କୃତିର କିଛି ପ୍ରତିଫଳନ ବାଞ୍ଛନୀୟ । କିନ୍ତୁ ବର୍ତ୍ତମାନ ପ୍ରସ୍ତୁତ ଓ ପ୍ରଦର୍ଶିତ ହେଉଥିବା ସିନେମାଗୁଡ଼ିକରେ ଅସଙ୍ଗତା , ହାସ୍ୟାସ୍ପଦତା ମଧ୍ୟରେ କିଛି ଯୌକ୍ତିକତା ନାହିଁ । ଯୁକ୍ତିହୁଏ, ବାସ୍ତବତାର ଦୁର୍ବିସହତାରୁ କିଛି ସମୟ ପାଇଁ ଅବ୍ୟାହତି ପାଇଁ ଦର୍ଶକ ଯାଏ ସିନେମା, ମନୋରଂଜନ ପାଇଁ । ବର୍ତ୍ତମାନ ଯାହା ଦେଖିବାକୁ ମିଳୁଛି ଚଳଚ୍ଚିତ୍ରର ସଂଳାପରେ ଅମାର୍ଜିତ ଭାଷାର ପ୍ରୟୋଗ, ସଂଗୀତରେ ସୃଜନଶୀଳତାର ଅଭାବ, ନିର୍ଦ୍ଦେଶନାରେ ନୂତନତ୍ୱର ଅନୁପସ୍ଥିତି ସବୁର ସମନ୍ୱୟରେ ଯେଉଁ ଚିତ୍ର ନିର୍ମାଣ ହେଉଛି ତାର ପରିଣାମ ସହଜରେ ଅନୁମେୟ । ଆଶ୍ଚର୍ଯ୍ୟ ଲାଗୁଛି ଯେ ଏଭଳି ସିନେମା ଗୁଡ଼ିକ ବକ୍ସ ଅଫିସରେ କିଭଳି ସଫଳତା ଲାଭ କରୁଛନ୍ତି ? ଏଥିରୁ ବୁଝିବାକୁ ପଡ଼ିବ ଆମର ରୁଚିର ଅଭାବ । ରୁଚିପୂର୍ଣ୍ଣ ଚଳଚ୍ଚିତ୍ରର ଅନୁପସ୍ଥିତିରେ ଦର୍ଶକ ଅସହାୟ ଓ ବିକଳ୍ପର ଅଭାବରେ ବାଧ ହେଉଛି ଏଭଳି ବିକୃତ, ଅପ୍ରୀତିକର ଚଳଚ୍ଚିତ୍ରକୁ ଉପଭୋଗ କରିବାକୁ ।

ନିକଟ ଅତୀତରେ ହିନ୍ଦୀ ସିନେମା ଜଗତରେ ପ୍ରମାଣିତ ହୋଇଛି ଯେ ଉଚ୍ଚମାନର, ନୂତନ କାହାଣୀ ନେଇ ଯେଉଁ ଚଳଚ୍ଚିତ୍ର ପ୍ରସ୍ତୁତ ହେଉଛି ତା ବେଶୀଭାଗ ଜନସାଧାରଣଙ୍କ ଦ୍ୱାରା ଆଦୃତ ଓ ପ୍ରଶଂସିତ । ଏହାର ଅର୍ଥ ଭଲ ରୁଚିପୂର୍ଣ୍ଣ ଫିଲ୍ମର ଚାହିଦା ଅଛି । ତା ନହେଲେ 'ବ୍ଲାକ୍', 'ଲଗାନ', 'ରଂଗ ଦେ ବସନ୍ତୀ', 'ଭଗବାନ' ପ୍ରଭୃତି ଫିଲ୍ମ ବକ୍ସ ଅଫିସରେ ସଫଳତା ଲାଭ କରି ନଥାନ୍ତା । ହଲିଉଡ୍ ଫିଲ୍ମ ବିଷୟରେ ଲେଖି କିଛି ଲାଭ ନାହିଁ । କାରଣ ସେଗୁଡ଼ିକ ଦେଖିବାକୁ ସୁଯୋଗ ଆଉ ଓଡ଼ିଶାରେ ନାହିଁ । ପଚାଶ ବର୍ଷ ତଳେ କଟକରେ ସୁବିଧା ଥିଲା ।

ଚଳଚ୍ଚିତ୍ର ନିର୍ମାଣର ଟେକ୍ନୋଲଜିରେ ମଧ୍ୟ ଅଭୂତପୂର୍ବ ଆଧୁନିକୀକରଣ ଆସିଛି । ଡ଼ିଜିଟାଲ ଟେକ୍ନୋଲଜିର ପ୍ରୟୋଗରେ କାହାଣୀକୁ ଯେଭଳି ରୂପାୟନ କରିହେଉଛି ତାହା ଅତୀତରେ କଳ୍ପନା କରି ହେଉନଥିଲା । ରାକେଶ ରୋଷନଙ୍କର 'କ୍ରୀସ' ଓ 'କୋଇ ମିଲ୍‌ଗୟା' ପ୍ରଭୃତିରେ ଅତ୍ୟାଧୁନିକ ଟେକ୍ନୋଲଜି ପ୍ରୟୋଗର କିଛି ନମୁନା ମିଳେ । ହଲିଉଡ୍ ଚିତ୍ରଗୁଡ଼ିକରେ ଏହାଠାରୁ ଉନ୍ନତମାନର ଟେକ୍ନୋଲଜି ଓ ଅବିଦ୍ୟମାନ ବସ୍ତୁର କାଳ୍ପନିକ ଚିତ୍ରଣ ଦେଖିବାକୁ ମିଳେ । ଏହି ପରିପ୍ରେକ୍ଷୀରେ, ସିନେମାହଲ ଗୁଡ଼ିକର ଆଧୁନିକୀକରଣ ମଧ୍ୟ ନିତାନ୍ତ ଜରୁରୀ । ତା ବିନା ବର୍ତ୍ତମାନ ପ୍ରସ୍ତୁତ ହେଉଥିବା ଫିଲ୍ମଗୁଡ଼ିକର ସଂପୂର୍ଣ୍ଣ ପ୍ରଭାବ ବା ପ୍ରତିଫଳନକୁ

ଉପଭୋଗ କରିବା ଅସମ୍ଭବ ।  ବର୍ତ୍ତମାନ ଭାରତର ଅନ୍ୟାନ୍ୟ ସହରରେ ଏ ଦିଗରେ ପଦକ୍ଷେପ ନିଆଗଲାଣି । ଓଡ଼ିଶାର ଦୃଶ୍ୟକ୍ରମ ନୈରାଶଜନକ । କାହାରି ଉଦ୍ୟମ ନାହିଁ , ଚିନ୍ତା ମଧ ନାହିଁ ।

ଏସବୁ ସହିତ ତୁଳନା କଲେ ମନେହେବ ଓଡ଼ିଆ ଚିତ୍ର ନିର୍ମାଣ ବହୁ ପଛରେ ପଡ଼ିଛି । ଆମେ ଏବେବି ଓଡ଼ିଶା ମଧରେ ଏଭଳି ଏକ ଶକ୍ତିଶାଳୀ ମାଧମକୁ ଆବଦ୍ଧ କରିବାକୁ ଚାହୁଁ । ଜଗତୀକରଣ ଏବଂ ଆଇ.ଟି.କ୍ଷେତ୍ରରେ ଦ୍ରୁତ ଅଭିବୃଦ୍ଧି ପରେ ଉଚ୍ଚକୋଟୀର ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣର ପ୍ରଚେଷ୍ଟାର ସୁଯୋଗ ଆସିଛି । ଏହା କିଭଳି ଓଡ଼ିଶା ବାହାରେ ଦେଶ ଓ ବିଦେଶରେ ପରିବେଷଣ କରିହେବ ଏବଂ ଲାଭଜନକ ବ୍ୟବସାୟରେ ପରିଣତ କରିବାକୁ ପଡ଼ିବ ସେଥିପାଇଁ ଚିନ୍ତା କରିବାର ପ୍ରାରମ୍ଭ ହେବା ଉଚିତ୍ । ଆନିମେସନ ବା କ୍ରମରେ ଅଙ୍କିତ ଚିତ୍ରମାଳାର ଚଳଚ୍ଚିତ୍ର ଓ କାର୍ଟୁନ୍ ଚଳଚ୍ଚିତ୍ରର ଚାହିଦାର ଭବିଷ୍ୟତ ଉଜ୍ଜଳ ଓ ଲାଭଜନକ । ଜାପାନ୍ ଓ ଆମେରିକାର କଂପାନୀମାନେ ବର୍ତ୍ତମାନ ଭାରତରେ ସେ ଦିଗରେ ମନ ନିବେଶ କରୁଛନ୍ତି ।

ଏଥିପାଇଁ ଏ କ୍ଷେତ୍ରକୁ ଚିନ୍ତାଶୀଳ, ସୃଜନଶୀଳ, ଆନ୍ତରିକତାପୂର୍ଣ୍ଣ ନିଷ୍ଠାପର ଲୋକେ ଆସନ୍ତୁ । ଫିଲ୍ମ ନିର୍ମାଣରେ କ୍ଷତି ବା ଅନିଷ୍ଟର ଆଶଙ୍କାକୁ ଏଡ଼ାଇ ହେବ ନାହିଁ । କଷ୍ଟର ସମ୍ଭାବନାକୁ ଗ୍ରହଣ କରି ଏ କ୍ଷେତ୍ରକୁ ଚାଲେଂଜ ରୂପେ ଗ୍ରହଣ କରି ମନୋନିବେଶ କରି ସାଫଲ୍ୟ ପାଇବାର ସମ୍ଭାବନା ଅଛି । ଚଳଚ୍ଚିତ୍ର ନିର୍ମାଣ ଏଭଳି ଗୋଟିଏ ପେଷା ଯେଉଁଠି ସଂପୂର୍ଣ୍ଣ ଉତ୍ସର୍ଗ, ଓ ନିବିଷ୍ଟତା ଦରକାର । ଆମ ପ୍ରଦେଶରେ ବହୁ ଦକ୍ଷ ନିର୍ଦ୍ଦେଶକ, ଫଟୋଗ୍ରାଫର ପ୍ରଭୃତି ଅଛନ୍ତି । ଯେଉଁମାନେ ପୁନେ ଫିଲ୍ମ ଇନ୍‌ଷ୍ଟିଚ୍ୟୁଟରେ ସଫଳତାର ସହିତ ଶିକ୍ଷାଲାଭ କରିଛନ୍ତି, ପୃଷ୍ଠପୋଷକତା ଏବଂ ସୁଯୋଗର ଅଭାବରୁ ସେମାନେ ନିଜର ଅନ୍ତର୍ନିହିତ ସୃଜନୀଶକ୍ତିର ପରିଚୟ ଦେବାକୁ ଅକ୍ଷମ । ସେଥିପାଇଁ ସଂଗଠିତ ଉପାୟରେ ପଦକ୍ଷେପ ନେବା ହିଁ ଶ୍ରେୟସ୍କର । ଫାଇନାନ୍ସିୟର ବା ଡ଼ିଷ୍ଟ୍ରିବ୍ୟୁଟର ହୁଅନ୍ତୁ ଅଥବା ସିନେମା ଗୃହର ମାଲିକ ହୁଅନ୍ତୁ ସମସ୍ତଙ୍କୁ ସଂଗଠିତ ହୋଇ ପେଷାଦାର ବ୍ୟବସାୟୀ ଭାବେ ଏ କ୍ଷେତ୍ରକୁ ବ୍ୟାପକ ଦୃଷ୍ଟିରେ ନିଷ୍ଠାର ସହିତ ଗ୍ରହଣ କରିବାକୁ ପଡ଼ିବ । ସେହିଭଳି ଅଭିନେତା, ଅଭିନେତ୍ରୀ କିମ୍ବା ନିର୍ଦ୍ଦେଶକ, ସଂଗୀତ ନିର୍ଦ୍ଦେଶକ, ଅଥବା ଚିତ୍ରନାଟ୍ୟକାର ସମସ୍ତେ ଏହାକୁ ଏକ କଳାର ମାଧମ ଭାବି ରୁଚିପୂର୍ଣ୍ଣ ଭାବନାର ପ୍ରତିଫଳନ କରିବା ଉଚିତ୍ । ନୂତନତ୍ୱର ପ୍ରୟୋଗ ହେବା ଦରକାର । କିଛି ଏକ୍ସପେରିମେଣ୍ଟ ହେବା ଆବଶ୍ୟକ । ଆମର ମନେରଖିବା ଉଚିତ୍ ଚଳଚ୍ଚିତ୍ର ଏକ ଶକ୍ତିଶାଳୀ ମାଧମ । ଏହାର ପ୍ରଭାବ ସୁଦୂରପ୍ରସାରୀ । ଗୋଟିଏ ରୁଚିପୂର୍ଣ୍ଣ ସମାଜ ଗଠନରେ ଏହା ଏକ ନିର୍ଦ୍ଦିଷ୍ଟ ଭୂମିକା ଗ୍ରହଣ କରିପାରିବ । ଓଡ଼ିଶାରେ ବର୍ତ୍ତମାନ ଏକ ରେନାସାଁ ବା ସଂସ୍କାରର ପ୍ରୟୋଜନ ରହିଛି । ଚଳଚ୍ଚିତ୍ର ଜଗତର ସମସ୍ତେ ସେଥିରେ ସହାୟକ ହୋଇପାରିବେ ।



# ରାଜଧାନୀ ପୁନର୍ଗଠନର ଏକ ସୁବର୍ଣ୍ଣ ସୁଯୋଗ

ଭୁବନେଶ୍ୱରର ପ୍ରାଚୀନତ୍ୱ ଓ ପୁରାତନତ୍ୱ ବିଷୟରେ ଆମେ ଉଣାଅଧିକେ ଜାଣୁ । ଖ୍ରୀଷ୍ଟପୂର୍ବ ୨୬୧ରେ ଭୁବନେଶ୍ୱରରେ ଜନବସତିର ସୂଚନା ମିଳୁଛି । ଅଶୋକଙ୍କର କଳିଙ୍ଗ ବିଜୟ ତା'ର ପ୍ରମାଣ । ଶିଶୁପାଳଗଡ଼ର ଇତିହାସ ମଧ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀର । ପରାକ୍ରମୀ ଖାରବେଳଙ୍କ ରାଜତ୍ୱ ଓ କୀର୍ତ୍ତି ବିଷୟରେ ଖୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ହାତୀଗୁମ୍ଫାର ଶିଳାଲେଖରୁ ଏକ ପରିପୁଷ୍ଟ ସଂସ୍କୃତି ଓ ସଭ୍ୟତାର ସୂଚନା ମିଳେ । ଷଷ୍ଠ ଶତାବ୍ଦୀରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ବିଭିନ୍ନ ସମୟରେ ଗଢ଼ି ଉଠିଥିବା ମନ୍ଦିର ଓ କୀର୍ତ୍ତିରାଜି ଇତିହାସର ନୀରବ ସାକ୍ଷୀ ରୂପେ ଦଣ୍ଡାୟମାନ— ଶୈଳୋଦ୍ଭବ, ଭୌମକର, ସୋମବଂଶୀ, ଗଂଗ, ସୂର୍ଯ୍ୟବଂଶୀ ଓ ଗଜପତି ରାଜାମାନଙ୍କର ଅବଦାନକୁ ମନେପକାଇବା ପାଇଁ ।

ଦୁଇହଜାର ବର୍ଷରୁ ଉର୍ଦ୍ଧ୍ୱ ଅବିଚ୍ଛିନ୍ନ ଇତିହାସ ସ୍ରୋତରେ ଜୀବନ୍ତ ନଗରୀ ହୋଇ ତିଷ୍ଠି ରହିବା ଉଦାହରଣ ଭାରତବର୍ଷରେ ବିରଳ । ଏହି ପୃଷ୍ଠଭୂମିରେ ଭୁବନେଶ୍ୱରର ଗୌରବମୟ ଇତିହାସ, ଭୁଗୋଳ, ଜଳବାୟୁ ତଥା ଗମନାଗମନର ସୁବିଧାକୁ ଦୃଷ୍ଟିରେ ରଖି ନୂତନ ରାଜଧାନୀ ସ୍ଥାପନ ପାଇଁ ନିଷ୍ପତ୍ତି ନିଆହୋଇଥିଲା । ସେତେବେଳେ କଳ୍ପନା ଥିଲା ଯେ ଭୁବନେଶ୍ୱର ନୂଆଦିଲ୍ଲୀ ଢ଼ାଞ୍ଚାରେ ରାଜନୀତି ଓ ଶାସନର କେନ୍ଦ୍ରସ୍ଥଳୀ ହେବ । କଟକ ହେବ ବ୍ୟବସାୟିକ କେନ୍ଦ୍ର ଓ ଚୌଦ୍ୱାର ପରିଚିତ ହେବ ଶିଳ୍ପାଞ୍ଚଳ ରୂପେ ।

ଏହି ନୂତନ ରାଜଧାନୀର ନକ୍ସା ତିଆରି କରିଥିଲେ କୋଏନିସବର୍ଗର ସାହେବ । ତାଙ୍କ ଯୋଜନାରେ ଏ ସହର ସୀମିତ ୫୦,୦୦୦ ଜନସଂଖ୍ୟା ପାଇଁ ଉଦ୍ଦିଷ୍ଟ ଥିଲା । ଉଚ୍ଚ ଅଟ୍ଟାଳିକା କିମ୍ବା ଜନ ଓ ଯାନବହୁଳ ରାସ୍ତାଘାଟ ତାଙ୍କ ଯୋଜନାରେ ସ୍ଥାନ ପାଇନଥିଲା । ସହରଟିର ପ୍ରତିବେଶୀ ଓ ପଡ଼ୋଶୀ ଚିନ୍ତାଧାରାରେ ନକ୍ସା ପ୍ରଭାବିତ ହୋଇଥିଲା । ଯଦିଓ ଏକ ସହରର ସୃଷ୍ଟି ପରିଣତିକୁ ସେ ପସନ୍ଦ କରିନଥିଲେ ଏବଂ ନେହେରୁଙ୍କ ସ୍ୱପ୍ନର ବିରୋଧୀ ବୋଲି ଆଭାସ ଦେଇଥିଲେ, ତଥାପି ରାଜନୈତିକ ଏବଂ ଅମଲାତନ୍ତ୍ର ଚାପରେ ସେ ନକ୍ସାର ରୂପରେଖ ଦେଇଥିଲେ, ଯେଉଁଠି ଏକମହଲା ଘର, ବିସ୍ତୃତ ବଗିଚା ଏବଂ ସୁନ୍ଦର ଓ ସରଳ ଜୀବନଯାତ୍ରା ଥିଲା ଲକ୍ଷ୍ୟ । ପୁରାତନ ସହିତ ନୂତନତ୍ୱର ସମନ୍ୱୟ । ଐତିହ୍ୟ ଏବଂ ଆଧୁନିକତାର ଏକ ଅପୂର୍ବ ସମ୍ମିଶ୍ରଣର ପ୍ରଚେଷ୍ଟା ।

ଏହି ପରିପ୍ରେକ୍ଷୀରେ ବର୍ତ୍ତମାନର ଭୁବନେଶ୍ୱରର ଜନସଂଖ୍ୟା ୮-୧୦ ଲକ୍ଷ । ଏହାର ପରିବେଶ ଦୂଷିତ । ଜଳ ପାନୀୟଯୋଗ୍ୟ ନୁହେଁ । ଜନଜୀବନ, ସମ୍ପତ୍ତି ବିପଦଗ୍ରସ୍ତ । ଐତିହ୍ୟ, କୀର୍ତ୍ତିରାଜି ଲୁପ୍ତ ପ୍ରାୟ । ପରିମଳ ଅବସ୍ଥା ବିପର୍ଯ୍ୟସ୍ତ । ମୂଲ୍ୟବୋଧ ଓ ରୁଚିବୋଧର ଅଧୋଗତି । ବିଶୃଙ୍ଖଳା ଓ ବେଆଇନ କାର୍ଯ୍ୟକଳାପରେ ସାଧାରଣ ନାଗରିକ ଦିଶାହରା । ଏଭଳି ପରିସ୍ଥିତି ପାଇଁ ସୁଚିନ୍ତିତ ଯୋଜନାର ଅଭାବ ଓ ଶାସନର ଦୁର୍ବଳତା ହିଁ ମୁଖ୍ୟତଃ ଦାୟୀ । ଜନ ବିସ୍ଫୋରଣ, ବେଆଇନ ଜମି ବଣ୍ଟନ, ଦୂରଦୃଷ୍ଟିର ଅଭାବ ଏବଂ ସର୍ବୋପରି ଜନସାଧାରଣଙ୍କର ଉଦାସୀନତା ଏକ ସୁନ୍ଦର ନଗରୀର ପରିକଳ୍ପନାକୁ ଧୂଳିସାତ କରିଦେଇଛି ।

ସୁଖର ବିଷୟ ଯେ ଭାରତ ସରକାରଙ୍କ ସହରୀ ନବୀକରଣ, ପୁନର୍ଜୀବନ ପରିକଳ୍ପନାରେ 'ଜବାହାରଲାଲ ନେହେରୁ ଜାତୀୟ ସହରାଞ୍ଚଳ ନବୀକରଣ ଯୋଜନା'ରେ (ଜେଏନ୍‌ଏନ୍‌ୟୁଆର୍‌ଏମ୍) ଓଡ଼ିଶାର ଦୁଇଟି ସହର ଭୁବନେଶ୍ୱର ଓ ପୁରୀ ଅନ୍ତର୍ଭୁକ୍ତ ହୋଇଛି । ଏ ଏକ ଭଗବତ ପ୍ରେରିତ ସୁଯୋଗ କର୍ତ୍ତୃପକ୍ଷ ଏବଂ ଜନସାଧାରଣଙ୍କ ପାଖରେ ସହରର ପୂର୍ବ ଗୌରବ ଫେରାଇ ଆଣିବା ପାଇଁ । ଆଗାମୀ ୭ ବର୍ଷ ଭିତରେ ଭାରତର ୬୩ଟି ସହରର ପୁନର୍ଜୀବନ ପାଇଁ ୧,୨୦,୦୦୦ କୋଟି ଟଙ୍କା ବିନିଯୋଗର ଆକଳନ କରାଯାଇଛି ।

ଏଭଳି ସୁଯୋଗର ସଦୁପଯୋଗ ପାଇଁ ସମସ୍ତଙ୍କର ସହଯୋଗର ଅନିବାର୍ଯ୍ୟତାକୁ ଲକ୍ଷ୍ୟ ରଖି ଗତ ଜାନୁୟାରୀ ମାସ ୨୭ ତାରିଖରେ ଇନ୍‌ଟାକ୍ ତରଫରୁ ଏକ କର୍ମଶାଳା ଅନୁଷ୍ଠିତ ହୋଇଥିଲା । ଇଞ୍ଜିନିୟର, ସ୍ଥପତି, ପ୍ରଶାସକ, ବୁଦ୍ଧିଜୀବୀ, ଶିକ୍ଷାବିତ, କଳାକାର, ଗଣମାଧ୍ୟମ ପ୍ରତିନିଧି ଓ ସରକାରଙ୍କ ତରଫରୁ ସଂସ୍କୃତି ମନ୍ତ୍ରୀ, ମେୟର, ବିଡ଼ିଏ ଉପାଧ୍ୟକ୍ଷ, ଡ଼ିଆଇଜି ଓ ଏସ୍‌ପି ଏଥିରେ ଭାଗନେଇ ଭୁବନେଶ୍ୱରର ବର୍ତ୍ତମାନ ଓ ଭବିଷ୍ୟତ ଉପରେ ବିସ୍ତୃତ ଆଲୋଚନା କରିଥିଲେ । ଇନ୍‌ଟାକ୍‌ର ପ୍ରଚେଷ୍ଟା ଥିଲା ଭୁବନେଶ୍ୱରର ପ୍ରଗତି ଓ ଉନ୍ନତି ଯାତ୍ରାରେ କର୍ତ୍ତୃପକ୍ଷ ଓ ନାଗରିକଙ୍କ ଭିତରେ 'ଭାଗୀଦାରୀ' ଭାବନାର ଉଦ୍ରେକ କରିବା । ଇତିହାସ ଦୃଷ୍ଟିକୋଣରୁ ଖଣ୍ଡଗିରି - ଉଦୟଗିରି, ଶିଶୁପାଳଗଡ଼, ଧଉଳୀ ବିଭବଶାଳୀ ଐତିହ୍ୟର ପ୍ରତୀକ । ଏଗୁଡ଼ିକ ବିଶ୍ୱ ଐତିହ୍ୟ ସୂଚୀ (ୱାଲର୍ଡ଼ ହେରିଟେଜ୍ ସାଇଟ୍)ରେ ସ୍ଥାନ ପାଇବା ଉଚିତ । ସେଥିପାଇଁ ଶୀଘ୍ର ପଦକ୍ଷେପ ନେବା ପ୍ରୟୋଜନ । ଏକାମ୍ର ପୁରାଣରେ ଏକାମ୍ର କ୍ଷେତ୍ର ଶୈବପୂଜା ପାଇଁ ପ୍ରସିଦ୍ଧି ଲାଭ କରିଥିଲେ ମଧ୍ୟ ଏହା ବୌଦ୍ଧ, ଜୈନ ଏବଂ ହିନ୍ଦୁ କଳା ଓ ସ୍ଥାପତ୍ୟ ଶୈଳୀର ଏକ ଅତୁଳନୀୟ ନମୁନା । ଭୁବନେଶ୍ୱରର ଜଳାଶୟ ସମୂହ ଧର୍ମ ସହିତ ଜଡ଼ିତ ଥିଲେ ମଧ୍ୟ ଅର୍ଥନୀତି ଓ ଜୀବନଯାତ୍ରା ଉପଯୋଗୀ । ପାର୍ଶ୍ୱବର୍ତ୍ତୀ ଚନ୍ଦକା ଜଙ୍ଗଲ ପରିବେଶ ସାଥୀ ।

ଭୁବନେଶ୍ୱରର ବହୁ କୀର୍ତ୍ତିରାଜି ଯଥା- ମନ୍ଦିର, ମଠ, ପ୍ରାଚୀନ ପୁଷ୍କରିଣୀ, ଗଡ଼, ମଣ୍ଡପ ବର୍ତ୍ତମାନ ଅସୁରକ୍ଷିତ । ଏସବୁର ରକ୍ଷଣାବେକ୍ଷଣ, ସଂରକ୍ଷଣର ପ୍ରୟୋଜନ ରହିଛି ।

ସେ ସବୁର ବିବରଣୀ ଅତୀତରେ ଇନ୍‌ଟାକ୍ ତରଫରୁ ସରକାରଙ୍କୁ ଦିଆଯାଇଛି । ପ୍ରଥମେ ମନ୍ଦିରମାଳିନୀ ଏ ସହରର ସବୁ ମନ୍ଦିରର ପୁନରୁଦ୍ଧାର ଓ ସୁରକ୍ଷା ଏବଂ ସଂରକ୍ଷଣ ପାଇଁ ପଦକ୍ଷେପ ନିଆଯାଉ ଏବଂ ନିମ୍ନଲିଖିତ ବିଷୟ ଉପରେ ବିଶେଷ ଧ୍ୟାନ ଦିଆଯାଉ - (୧) ମନ୍ଦିର ସଂଶ୍ଳିଷ୍ଟ ଜବରଦଖଲ ଉଚ୍ଛେଦ । ବିଶେଷକରି ଶିଶୁପାଳଗଡ଼, ଚୁଡ଼ଙ୍ଗଗଡ଼, ଲିଙ୍ଗରାଜ ମନ୍ଦିର ଇତ୍ୟାଦିରେ, (୨) ମନ୍ଦିରଗୁଡ଼ିକର ଭିତ୍ତିଭୂମିର ଦୃଢ଼ୀକରଣ, (୩) କୀର୍ତ୍ତିରାଜିରେ ଜୈବିକ ଉପୃତ୍ତିର ମୂଳ ଉତ୍ପାଟନ, (୪) ଆବର୍ଜନା ଦୂରୀକରଣ, (୫) ଜଳ ନିଷ୍କାସନର ସୁବିଧା, (୬) ସୁରକ୍ଷା ବ୍ୟବସ୍ଥା, (୭) ସଂରକ୍ଷଣ ପାଇଁ ସ୍ଥାୟୀ ଅର୍ଥ ବ୍ୟବସ୍ଥା, (୮) ଐତିହ୍ୟ ସ୍ଥଳୀର ୩୦୦ ମିଟର ଭିତରେ ନିର୍ମାଣ କାର୍ଯ୍ୟ ବନ୍ଦ, (୯) ସୌନ୍ଦର୍ଯ୍ୟ ବୃଦ୍ଧି ।

ବିଦେଶୀ ଏବଂ ଆଭ୍ୟନ୍ତରୀଣ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବା ପାଇଁ ନିମ୍ନଲିଖିତ ପଦକ୍ଷେପ ବିଚାରଯୋଗ୍ୟ ଓ ପ୍ରୟୋଜନ :- ଆନ୍ତର୍ଜାତିକ ସ୍ତରର ବିମାନବନ୍ଦର ତିଆରି ସହରର ବାହାରେ । ଆମୋଦପ୍ରମୋଦ ପାଇଁ ବିସ୍ତାରିତ ଯୋଜନା ଓ ପାର୍କ ନିର୍ମାଣ ଏବଂ ଉନ୍ନତୀକରଣ । ଜଳାଶୟଗୁଡ଼ିକର ପୁନରୁଦ୍ଧାର ଏବଂ ନୌକା ଚାଳନାର ସୁବିଧା । ଜନସାଧାରଣ ଓ ପର୍ଯ୍ୟଟକଙ୍କ ପାଇଁ ସ୍ଥାନେ ସ୍ଥାନେ ଶୌଚାଳୟ । ଜବର ଦଖଲ ଉଚ୍ଛେଦ । ପର୍ଯ୍ୟଟକଙ୍କ ଗମନାଗମନ ପାଇଁ ଆଧୁନିକ ବାହନ । ଟ୍ୟାକ୍ସି, ଅଟୋ ପାଇଁ ମିଟର ବ୍ୟବସ୍ଥା । ରାସ୍ତାଘାଟର ଉନ୍ନତୀକରଣ । ହୋଡ଼ିଂ ଅପସାରଣ । ଟ୍ରାଫିକ ଆଇନ ପାଳନ ଏବଂ ଉଲ୍ଲଘଂନ ପାଇଁ କଠୋର ଦଣ୍ଡବିଧାନ । ସୁରକ୍ଷା ପାଇଁ ପୁଲିସ ପେଟ୍ରୋଲିଂ ଏବଂ ନାଗରିକ ସମିତି ଗଠନ । ପର୍ଯ୍ୟଟକ- ମିତ୍ର ପୁଲିସ ମୁତୟନ ।

ଏଥିସହିତ ଆବର୍ଜନା ନିଷ୍କାସନ, ଆଇନ ଅନୁଯାୟୀ ପ୍ଲାଷ୍ଟିକ ପଦାର୍ଥର ବ୍ୟବହାର ନିଷେଧ, ଗେଷ୍ଟହାଉସ୍, ହୋଟେଲର ପରିମଳ, ପରିଚ୍ଛନ୍ନତା, ଖାଦ୍ୟପେୟର ମାନ ଓ ସୁରକ୍ଷା ପାଇଁ ସରକାର ଓ ନାଗରିକ ସମିତିଙ୍କର ସମନ୍ୱୟ ପ୍ରଚେଷ୍ଟା ନିତାନ୍ତ ଆବଶ୍ୟକ ।

ସେହିଭଳି ଯାତ୍ରୀ ନିବାସ, ଆମ୍ଫିଥିଏଟର, ସ୍ଥପତି ପାର୍କ, ବସ୍‌ଷ୍ଟାଣ୍ଡ, ଆଧୁନିକ ସପିଂ ସେଣ୍ଟର ନିର୍ମାଣ, ଅଣହିନ୍ଦୁଙ୍କ ଦର୍ଶନ ପାଇଁ ମନ୍ଦିର ପାର୍ଶ୍ୱରେ ସୁରକ୍ଷିତ, ସୁସଜ୍ଜିତ ପ୍ଲାଟଫର୍ମ, ପର୍ଯ୍ୟଟକ ସ୍ଥଳୀ ନିକଟରୁ ଭିକାରୀମାନଙ୍କ ଅପସାରଣ ଜରୁରୀ ।

ଭୁବନେଶ୍ୱରକୁ ସୁନ୍ଦର, ସବୁଜ, ଜୀବନ୍ତ ସହର କରିବା ପାଇଁ ଦରକାର— ଭୁବନେଶ୍ୱର ସହର ଭିତରେ ଯାଇଥିବା ଜାତୀୟ ରାଜପଥର ବିକଳ୍ପ ବ୍ୟବସ୍ଥା । ପାନୀୟ ଜଳ ଯୋଗାଣର ଯୋଜନା, ୨୦୩୦ ପର୍ଯ୍ୟନ୍ତ ବୃକ୍ଷରୋପଣ ଏବଂ ସବୁଜୀକରଣ, ବସ୍ତିରେ ରହୁଥିବା ଲୋକଙ୍କର ପୁନର୍ବାସର ସୁଚିନ୍ତିତ ଯୋଜନା, ସାଟେଲାଇଟ୍ ଟାଉନସିପର ନିର୍ମାଣ,ସହରର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ପରିବେଶକୁ ଦୂଷିତ କରୁନଥିବା ଶିଳ୍ପୀକରଣ ଯଥା -

ଆଇଟି ଏବଂ ହର୍ଟିକଲଚର, ହସ୍ତଶିଳ୍ପର ଆଧୁନିକୀକରଣ ଓ ବଜାରଭିତ୍ତିକ ପ୍ରସାର । ଦୂଷିତ ପରିବେଶକୁ ପରାଭୂତ କରିବା ପାଇଁ ଯାନବାହନ, ଶିଳ୍ପାଞ୍ଚଳରେ ମାନଦଣ୍ଡର କାର୍ଯ୍ୟକାରିତା ଏବଂ ଉଚିତ ଦଣ୍ଡବିଧାନ ।

ଏଥିସହିତ ଜରୁରୀକାଳୀନ ଭିତ୍ତିରେ ଭିନ୍ନକ୍ଷମ ଲୋକଙ୍କ ପାଇଁ ସହାନୁଭୂତିପୂର୍ଣ୍ଣ ଉନ୍ନୟନ ଯୋଜନା ଏବଂ ୟୁନେସ୍କୋ ଓ ଭାରତ ସରକାରଙ୍କର କୀର୍ତ୍ତିରାଜିର ସୁରକ୍ଷା ନିମନ୍ତେ ପ୍ରଣୀତ ଆଇନ ଭିତ୍ତିରେ ମୋଡେଲ୍ ଐତିହ୍ୟ ଆଇନକାନୁନ୍ ପ୍ରଣୟନ କରିବାର ଆବଶ୍ୟକତା ରହିଛି ।

ଜନସଚେତନତା ଓ ଜନସହଯୋଗ ଦ୍ୱାରା ହିଁ ଏସବୁ ସମ୍ଭବ ହୋଇପାରିବ । ଏ ଯାତ୍ରା ଦୀର୍ଘ ଏବଂ ଅନିଶ୍ଚିତ । ଏଥିପାଇଁ ସମସ୍ତଙ୍କର - ରାଜନୀତିଜ୍ଞ, ପ୍ରଶାସନ ଏବଂ ଜନସାଧାରଣଙ୍କର ସହଯୋଗ ଏକାନ୍ତ ଆବଶ୍ୟକ ।

'ଏ ସହର ଆମର - ସେ ଦାୟିତ୍ୱ ତୁମର' ଆଭିମୁଖ୍ୟ ନେଇ ଏଇ ଐତିହ୍ୟସମ୍ପନ୍ନ ବିଭବଶାଳୀ ଗୌରବମୟ ସହରକୁ ଏ ଶତାବ୍ଦୀର ଶ୍ରେଷ୍ଠ ସହର କରିବା କଷ୍ଟକର ।



# କ୍ରିକେଟ୍ ଓ ଗଲ୍ଫର ନୂତନ ଦିଗନ୍ତ

୨୦୦୭ ମାର୍ଚ୍ଚ ତେଇଶ ତାରିଖରେ ଯେତେବେଳେ ଜନଶତାବ୍ଦୀ ଟ୍ରେନ୍ ହାଓଡ଼ା ଷ୍ଟେସନ ପ୍ଲାଟଫର୍ମରେ ପଂହଚିଲା, ସମସ୍ତଙ୍କ ମୁହଁରେ ଗୋଟିଏ କଥା — ବିଶ୍ୱକପ । କୁଲି, ଟ୍ୟାକ୍ସିବାଲା,ବହିଦୋକାନୀ,ଯାତ୍ରୀ ସମସ୍ତ ଭାରତୀୟ ଦଳର ବିଜୟ ନେଇ ଆଶାବାଦୀ । ସଂଧ୍ୟାରେ ସହରରୁ ବିମାନ ବନ୍ଦର ରାସ୍ତାରେ ଦେଖିଲୁ ଯାନବାହନର ସଂଖ୍ୟା କମ୍ । ବିମାନବନ୍ଦରରେ ମଧ୍ୟ ଏକା ଅବସ୍ଥା । ଟି.ଭି କିମ୍ବା ମୋବାଇଲ ମାଧ୍ୟମରେ ଖେଳର ପ୍ରତି ମୁହୂର୍ତ୍ତର ବିବରଣୀ ସମସ୍ତଙ୍କ ପାଖରେ । ଭାରତୀୟ ଦଳର ଭାଗ୍ୟ ନିକିତିର ଦୋଦୁଲ୍ୟମାନ ଅବସ୍ଥା ପ୍ରତିଟି ଯାତ୍ରୀ ଓ ବିମାନ ବନ୍ଦରରେ କର୍ମକର୍ତ୍ତାଙ୍କ ମୁହଁରେ ପ୍ରସ୍ଫୁଟିତ । ନିଶ୍ଚିତ ଭାବେ ଏ କ୍ରିକେଟ ମାନିଆ ବା ପ୍ରବଳ ଆଗ୍ରହ ଓ ଉତ୍ସାହ ଦେଶର ସେବା ଓ ଅର୍ଥନୀତିର ଉତ୍ପାଦନଶୀଳତା ଉପରେ ପ୍ରଭାବ ପକାଉଛି । ମନେହେଉଛି ଭାରତୀୟ ଦଳ ଖେଳୁଥିବା ମ୍ୟାଚଦିନ କର୍ତ୍ତୃପକ୍ଷ ଓ ଜନସାଧାରଣଙ୍କ ମଧ୍ୟରେ ଏକ ଅଲିଖିତ ବୁଝାମଣା ରହିଛି ଯେ କ୍ରିକେଟ୍‌ର ପ୍ରାଧାନ୍ୟ ଦେଶର ଅର୍ଥନୈତିକ କାର୍ଯ୍ୟକଳାପର ଉର୍ଦ୍ଧ୍ୱରେ ।

କ୍ରିକେଟ୍‌ର ବର୍ତ୍ତମାନର ଆପେକ୍ଷିକ ଗୁରୁତ୍ୱ ଗତ ତିରିଶ ବର୍ଷର ଇତିହାସ । କ୍ରିକେଟ ପ୍ରତି ଲୋକଙ୍କୁ ଆକୃଷ୍ଟ କରିବା ପାଇଁ ଏବଂ ଏହାକୁ ଆମୋଦଦାୟକ, ଗତିଶୀଳ କରିବା ପାଇଁ ପାର୍କର ସାହେବ ପାଂଚଦିନିଆ ଟେଷ୍ଟ ସ୍ଥାନରେ ଏକ ଦିବସୀୟ କ୍ରିକେଟ୍‌ର କଳ୍ପନା କଲେ । ଦିନ-ରାତି ସମ୍ମିଶ୍ରଣରେ ଖେଳ ହେଲା । ବଲ୍‌ର ରଂଗ ବଦଳିଲା । ଖେଳାଳୀଙ୍କ ବେଶଭୁଷାରେ ପରିବର୍ତ୍ତନ ଆସିଲା । ଏଭଳି ଯୋଜନାକୁ ବ୍ୟବସାୟିକ ଦୃଷ୍ଟିକୋଣରୁ ଲାଭଦାୟକ କରିବାର ପ୍ରଚେଷ୍ଟା ହେଲା । ଗୋଟିଏ ଆକଳନ ଅନୁସାରେ ଏ ବର୍ଷର ବିଶ୍ୱକପରେ ବିଜ୍ଞାପନ ଭିତ୍ତିକ ନିବେଶ ପ୍ରାୟ ଏକ ବିଲିୟନ ଡ଼ଲାର । ପର୍ଯ୍ୟଟନ ଭିତ୍ତିକ ଆୟ ତିନିଶହ କୋଟି ଟଂକା । ବବ୍ ଉଲମର୍‌ଙ୍କ ମୃତ୍ୟୁ, ହତ୍ୟା କିମ୍ବା ଆତ୍ମହତ୍ୟା - ରହସ୍ୟର ପରିଧିରେ ଏ ପର୍ଯ୍ୟନ୍ତ ଲୁଚାୟିତ । ମ୍ୟାଚ ଫିକ୍ସିଂ ଅଭିଯୋଗରେ ଦକ୍ଷିଣ ଆଫ୍ରିକା, ଭାରତୀୟ ଖେଳାଳୀ ଦଣ୍ଡିତ ହେବାପରେ ମଧ୍ୟ ତାର ପୁନରାବୃତ୍ତିର ସମ୍ଭାବନା ବେଶୀ । ଏ ବର୍ଷର ବିଶ୍ୱକପ୍‌ରେ ବାଜିର ପରିମାଣ ହଜାର ହଜାର କୋଟି ଟଂକା ଥିଲା । ତେଣୁ ଏ ଖେଳରେ ମାଫିଆ ବା ଅପରାଧ ସଂଶ୍ଳିଷ୍ଟ ସଂଗଠନର କ୍ରମବର୍ଦ୍ଧିଷ୍ଣୁ ପ୍ରଭାବ ଏକ ବାସ୍ତବତା । ତେନ୍ଦୁଲକର

ପ୍ରଭୃତି କ୍ରିକେଟ ହିରୋଙ୍କ ବିଜ୍ଞାପନରୁ ଆୟ କୋଟି କୋଟି ଟଂକା । ଏ ହିରୋମାନେ ବର୍ତ୍ତମାନ ସମାଜର ଖ୍ୟାତି ସମ୍ପନ୍ନ ସେଲିବ୍ରେଟି ।

ସେମାନଙ୍କ ପାଖରେ ଖେଳ ପାଇଁ ସମୟ ସୁଯୋଗ ଦିନକୁ ଦିନ ସଂକୁଚିତ ହୋଇଯାଉଛି । କ୍ରିକେଟ୍‌ରେ ଅର୍ଥର ପ୍ରାଧାନ୍ୟ ବର୍ତ୍ତମାନ ସାଧାରଣ ମଣିଷର କଳ୍ପନାର ବାହାରେ । ନିକଟ ଅତିତରେ ଆ.ପି.ଏଲ୍ ରେ ନିଲାମ ହୋଇଥିବା କ୍ରିକେଟ ଖେଳାଳୀ ପଶୁମେଳାର ନିଲାମ କିମ୍ବା ମଧ୍ୟଯୁଗୀୟ କୀତ୍ରଦାସ ବ୍ୟବସ୍ଥା ବିଷୟ ମନେ ପକାଇ ଦିଏ । ବସ୍ତୁବାଦୀ ଜୀବନରେ ଅର୍ଥ ଏବଂ ଗଣମାଧ୍ୟମର ପ୍ରସାର ଓ ପ୍ରଭାବ ତରୁଣ, ତରୁଣୀଙ୍କ ଉପରେ ପଡ଼ିବା ସ୍ୱାଭାବିକ । ତେଣୁ ତେନ୍ଦୁଲକର ଓ ଧୋନି ହେବା ଯୁବ ପିଢ଼ୀର ସ୍ୱପ୍ନ ।

ଆମ ଛାତ୍ରାବସ୍ଥାରେ ଦୃଶ୍ୟପଟ ଭିନ୍ନ ଥିଲା । କ୍ରିକେଟ୍ ଏତେ ଜନପ୍ରିୟ ନଥିଲା । ବଡ଼ ବଡ଼ ସହର ମାନଙ୍କରେ ସୀମିତ ଥିଲା । ମନେ ଅଛି ପଚାଶ ବର୍ଷ ଆଗେ ୰କାର୍ତ୍ତିକ ବୋଷ ପ୍ରଥମେ ଓଡ଼ିଶାକୁ କୋଚ ହୋଇ ଆସିଲେ ୰ଭୈରବ ମହାନ୍ତିଙ୍କ ଉଦ୍ୟମ ଯୋଗୁ । ପରେପରେ ଟେଷ୍ଟ ଖେଳାଳୀ ଦତ୍ତୁ ଫାଡ଼୍‌କର କୋଚ ହୋଇ ଆସିଲେ ଛାତ୍ରଙ୍କୁ କ୍ରିକେଟର ମୌଳିକ ତଥ୍ୟ ଶିଖାଇବା ପାଇଁ । ବିଭିନ୍ନ ବୟସର ମୁଷ୍ଟିମେୟ ଛାତ୍ର, କିନ୍ତୁ ସମସ୍ତଙ୍କର ଶିଖିବା ପାଇଁ ଉତ୍ସୁକତା । ଆମ ଭିତରୁ ଅନେକ ପରବର୍ତ୍ତୀ ସମୟରେ କଲେଜ, ବିଶ୍ୱବିଦ୍ୟାଳୟ, ଏବଂ ରାଜ୍ୟ କ୍ରିକେଟ୍ ଟିମ୍‌ରେ ସ୍ଥାନ ପାଇଥିଲେ । କିନ୍ତୁ କ୍ରିକେଟ ସେତେବେଳେ ଗୋଟିଏ ଖେଳ ଥିଲା । ପେଷା କିମ୍ବା ବ୍ୟବସାୟ ନଥିଲା । ମ୍ୟାଚରେ ଭଲ ପ୍ରଦର୍ଶନ ଲକ୍ଷ୍ୟ ଥିଲା । ସେଥିରେ ଯୁଦ୍ଧର ଜୟ ପରାଜୟ ପରି ଅପମାନସୂଚକ ନଥିଲା । ଯୁଗ ବଦଳିଯାଇଛି । ଭାରତ-ପାକିସ୍ଥାନ କ୍ରିକେଟ ମ୍ୟାଚ କୌଣସି ଗୁଣରେ କାରଗିଲ୍ ଯୁଦ୍ଧ ଠାରୁ କମ୍ ନୁହେଁ । ମ୍ୟାଚ ସମୟରେ ଯେଉଁ ଉତ୍ପାଦନ କ୍ଷତି ଜାତୀୟ ସ୍ତରରେ ତାର ଆକଳନ କଲେ ଏଭଳି ପାଗଳାମୀର କୁପରିଣାମ ବିଷୟରେ ଲୋକେ ସଚେତନ ହେବେ । ଗଣମାଧ୍ୟମର କ୍ରିକେଟ୍-କୈନ୍ଦ୍ରିକ ଅତିରଂଜନ ଓ ପ୍ରବଳ ପ୍ରଚାରର ମୂଲ୍ୟାଙ୍କନ ହେବାର ପ୍ରୟୋଜନ ଆସିଛି । ସମୟ ଆସିଛି ଆତ୍ମସମୀକ୍ଷା କରିବାର ।

ଆମେରିକାରେ କ୍ରିକେଟ ଜନପ୍ରିୟ ନୁହେଁ । କହିବାକୁ ଗଲେ ଜନସାଧାରଣ ଏ ଖେଳ ବିଷୟରେ ଅଜ୍ଞ ଓ ଉଦାସୀନ କିନ୍ତୁ ବିଶ୍ୱକପ୍‌ର ଉନ୍ମାଦନା, ପାକିସ୍ଥାନ ଓ ଭାରତୀୟ ଦଳର ଆୟାରଲ୍ୟାଣ୍ଡ, ବାଂଲାଦେଶ ଠାରୁ ଶୋଚନୀୟ ପରାଜୟ, ବବ୍ ଉଲମର୍‌ଙ୍କ ମୃତ୍ୟୁ ଏଠାକାର ଗଣ ମାଧ୍ୟମର ଧ୍ୟାନ ଆର୍କଷଣ କରିଛି । ତଥାକଥିତ ଭଦ୍ରଲୋକଙ୍କ ଖେଳରେ ଅର୍ଥ ଓ ମାଫିଆର ସଂପୃକ୍ତି ଗଣମାଧ୍ୟମକୁ ଆଶ୍ଚର୍ଯ୍ୟାନ୍ୱିତ କରିଛି ।

ଓଡ଼ିଶାର ତରୁଣ ତରୁଣୀ ଆଥେଲେଟିକ୍‌ସ ଏବଂ ଅନ୍ୟାନ୍ୟ ଖେଳରେ ଜାତୀୟ ସ୍ତରରେ ସୁନାମ ଅର୍ଜନ କରିଥିବା ସତ୍ତ୍ୱେ କ୍ରିକେଟର ପ୍ରାଧାନ୍ୟ ଜନ ସାଧାରଣଙ୍କ ମନରେ

ପ୍ରତିବିମ୍ବିତ । ଦିଲ୍ଲୀପ ତାର୍କୀ, ଶ୍ରଦ୍ଧାଞ୍ଜଳି ସାମନ୍ତରାୟ, ଅନୁରାଧା ବିଶ୍ୱାଳ, ରାନୁ ମହାନ୍ତି ଙ୍କ ସଫଳତାରେ ଆମେ ଗର୍ବିତ ହେବା ଉଚିତ୍ । ସରକାର ଓ ସମାଜ ତରଫରୁ ପ୍ରୋତ୍ସାହନ ମିଳିବା ଦରକାର । କିନ୍ତୁ ବାସ୍ତବରେ ମଝିରେ ମଝିରେ ଗଣମାଧ୍ୟମରେ ପ୍ରଚାରିତ ଆଦିବାସୀ ସଂପ୍ରଦାୟ ଖେଳାଳୀଙ୍କ ଜୀବନ ସଂଘର୍ଷର କରୁଣ କାହାଣୀ ଆଚମ୍ବିତ କରେ । ସମସ୍ତ ବିଘ୍ନ, ଅସୁବିଧା ସତ୍ତ୍ୱେ ସେମାନେ ସଫଳତା ହାସଲ କରିଛନ୍ତି । ସେମାନେ ଆମର ଗୌରବ ଏବଂ ସମର୍ଥନ ଓ ସ୍ୱୀକୃତିର ହକ୍‌ଦାର ।

ବର୍ତ୍ତମାନ ଦେଖାଯାଉଛି ଆମେରିକାର ବେଶୀଭାଗ ଲୋକ ଗଲ୍ଫ ଖେଳ ପ୍ରତି ଆକୃଷ୍ଟ । ଦିନଥିଲା ଯେତେବେଳେ ଗଲ୍ଫ କେବଳ ବୟସ୍କ, ଧନୀ ଲୋକେ ଅବକାଶ ଗ୍ରହଣ ପରେ ଖେଳୁଥିଲେ । ଏବେ ବୟସ୍କ ଓ ଲିଙ୍ଗ ନିର୍ବିଶେଷରେ ଆବାଳବୃଦ୍ଧବନୀତା ଆକୃଷ୍ଟ ହେଉଛନ୍ତି ଗଲ୍ଫପ୍ରତି । କାରଣ ହେଉଛି ସାମାଜିକ ସ୍ୱୀକୃତି ଏବଂ ବିପୁଳ ଆର୍ଥିକ ପୁରସ୍କାର ।

ଆମେରିକାରେ ସମସ୍ତେ ଟାଇଗର ଉଡ୍ ହେବା ପାଇଁ ଚାହାନ୍ତି । କଂପାନୀମାନେ ନୂଆ ଖେଳାଳୀଙ୍କୁ ଆକୃଷ୍ଟ କରିବା ପାଇଁ ଶକ୍ତି, ସମ୍ବଳ ବିନିଯୋଗର ବିଭିନ୍ନ ପ୍ରକାରର ଉଦ୍ୟମ କରିଛନ୍ତି । ଫଳ ସ୍ୱରୂପ ପ୍ରତିବର୍ଷ ୩୦ଲକ୍ଷ ବ୍ୟକ୍ତି ଗଲ୍ଫ ଖେଳ ଆରମ୍ଭ କରନ୍ତି । କିନ୍ତୁ ଆନୁମାନିକ ସେତିକି ସଂଖ୍ୟାର ଲୋକେ ଖେଳରୁ ନିବୃତ୍ତ ହୁଅନ୍ତି । ଆମେରିକାରେ ୬ ଲକ୍ଷରୁ ବେଶୀ ଲୋକଙ୍କ ଜୀବିକା ଗଲ୍ଫ ଖେଳ ଉପରେ । ୨୦୨୦ ରେ ଆନୁମାନିକ ପାଂଚ କୋଟିରୁ ବେଶୀଲୋକ ଗଲ୍ଫ ଖେଳିବାର ସମ୍ଭାବନା ରହିଛି । ତେଣୁ କେତେକ ଚାହାନ୍ତି ଗଲ୍ଫକୁ ଅଧିକ ଜନପ୍ରିୟ ଓ ଆର୍କର୍ଷଣୀୟ କରିବା ପାଇଁ । ସେଥିପାଇଁ ଦରକାର ନୂତନ ରଣକୌଶଳ । କିଛି ଲୋକଙ୍କ ମତରେ ଏକ ଦିବସୀୟ କ୍ରିକେଟ ଭଳି ଗଲ୍ଫକୁ ଗତିଶୀଳ ଓ ଆଗ୍ରହାନ୍ୱିତ କରାଯାଉ । ନୂତନ ଖେଳାଳୀଙ୍କ ଅପେକ୍ଷା ଯେଉଁମାନେ ଖେଳରତ ସେମାନଙ୍କର ଖେଳପ୍ରତି ଅବିଚ୍ଛିନ୍ନ ଆଗ୍ରହ ପ୍ରତି ଦୃଷ୍ଟି ଦିଆଯାଉ ।

ଗଲ୍ଫ ଆମେରିକାରେ ଏକ ବିରାଟ ବ୍ୟବସାୟ । ଏ ସଂକ୍ରାନ୍ତୀୟ ବ୍ୟବସାୟର ପରିମାଣ ବାର୍ଷିକ ୬୦ ବିଲିୟନ ଡ଼ଲାରରୁ ଅଧିକ । ନିଃଶୁଳ୍କ ଟ୍ରେନିଂ, ଗରୀବ ଶ୍ରେଣୀରୁ ଅଧିକ ଲୋକଙ୍କୁ ଖେଳପ୍ରତି ଆର୍କଷଣ, ଅଠରବର୍ଷରୁ କମ ବୟସ୍କ ଝିଅ ଖେଳାଳୀଙ୍କର ଯୋଗଦାନ ପ୍ରଭୃତି ନୂତନ ରଣକୌଶଳର କେତେକ ଭାବରୂପ ।

କିଛି ମହଲରେ ଚିନ୍ତା ହେଲାଣି ଯେ ଗଲ୍ଫକୁ କୌତୁକ ଓ ଆମୋଦଦାୟକ କରାଯାଉ । ସେଥିପାଇଁ ଖେଳିବାର ଉପକରଣରେ ପରିବର୍ତ୍ତନ ଅଣାଯାଉ । ସୌଖୀନ ଓ ପେଶାଦାର ଖେଳାଳୀଙ୍କ ପାଇଁ ବିଭିନ୍ନ ବ୍ୟବସ୍ଥା ହେଉ । ଆଜିକାର ଜୀବନ ଶୈଳୀରେ ସମୟ ଅଭାବରୁ ଖେଳ ଉପଭୋଗ୍ୟ ହେବା ଦରକାର । ଏକ ଦିବସୀୟ କ୍ରିକେଟ ଭଳି ଗଲ୍ଫକୁ ଘଣ୍ଟେ କିମ୍ବା ଦୁଇଘଣ୍ଟା ମଧ୍ୟରେ ସୀମିତ କରିବାର ପ୍ରୟୋଜନ ଅଛି । ନୂଆ ରେଗୁଲେସନ, ନୂତନ ଗଲ୍ଫକୋର୍ସ ପ୍ରଣୟନର ସମୟ ଆସିଛି ।

ସରକାରୀ ଏବଂ ମ୍ୟୁନିସିପାଲ୍ଟି ପୃଷ୍ଠପୋଷକତାରେ କେତେକ ଗଲ୍ଫକୋର୍ସର ରକ୍ଷଣ ବେକ୍ଷଣ କରାଯାଉ ଯଦ୍ୱାରା ସବୁ ବର୍ଗର ଲୋକେ ଏ ଖେଳର ଆନନ୍ଦ ନେଇ ପାରିବେ ।

ଆମେରିକା ଭଳି ଆମ ଦେଶରେ ବର୍ତ୍ତମାନ ଗଲ୍ଫପ୍ରତି ଲୋକଙ୍କର ଆର୍କଷଣ ସାମାଜିକ ସ୍ୱୀକୃତି ଓ ଆରୋହଣ ପାଇଁ ବୃଦ୍ଧି ପାଇବ । କିଛି ଲୋକଙ୍କର ଧାରଣା, ଜୀବନର ସିଡ଼ିରେ ଉଠିବାକୁ ହେଲେ ଗଲ୍ଫ ଉତ୍କୃଷ୍ଟ ପଥ । ଖେଳରେ ଆର୍ଥିକ ଆର୍କଷଣ ମଧ୍ୟ ଦିନକୁ ଦିନ ବଢ଼ିବାକୁ ଲାଗିଛି । ବାସ୍ତବପକ୍ଷେ କ୍ରିକେଟ ଓ ଗଲ୍ଫ, ଖେଳ ଅପେକ୍ଷା ଆୟ ବୃଦ୍ଧି ଓ ସାମାଜିକ ସ୍ୱୀକୃତିର ଏକ ନୂତନ ପନ୍ଥା । ଓଡ଼ିଶାର ଲୋକେ ଏ ସ୍ରୋତରୁ ବାଦ୍ ପଡ଼ିବେ କାହିଁକି ?

ମନେ ହେଉଛି ଖେଳାଳୀ ମନୋଭାବ ଏବଂ ଖେଳ ସଂଜ୍ଞାର ନୂତନ ବ୍ୟାଖ୍ୟା କରିବାର ସମୟ ଆସିଛି । ଏସବୁ ସତ୍ତ୍ୱେ ଖେଳକୁ ଖେଳ ହିସାବରେ ରଖାଯାଉ ।

❋❋❋

# ଓଡ଼ିଶାର ସଂଗୀତାନୁଷ୍ଠାନ : ଅତୀତରୁ ବର୍ତ୍ତମାନ

ଓଡ଼ିଶାରେ କୌଣସି ସାଂସ୍କୃତିକ ଅନୁଷ୍ଠାନ ପଚାଶ ବର୍ଷ ତିଷ୍ଠି ପାରିବା ଅଭିନନ୍ଦନୀୟ । ପୃଷ୍ଠପୋଷକତା ଓ ନିଷ୍ଠାର ଅଭାବ ଓ ନାନା ଘାତ ପ୍ରତିଘାତ ମଧ୍ୟରେ ଯଦି କିଛି ଅନୁଷ୍ଠାନ ବଂଚି ରହି ପାରିଛନ୍ତି, ତାହା କେବଳ କେତେକ ବ୍ୟକ୍ତି ବିଶେଷଙ୍କ ତ୍ୟାଗ ଓ ଉଦ୍ୟମ ହେତୁ ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଗଢ଼ି ଉଠିଥିବା ଯେଉଁ କେତେକ ଅନୁଷ୍ଠାନ ମନେ ପଡୁଛନ୍ତି ସେମାନେ ହେଲେ - କଟକର କଳାବିକାଶ କେନ୍ଦ୍ର, ନ୍ୟାସନାଲ୍ ମ୍ୟୁଜିକ୍ ଆସୋସିଏସନ୍, ଉତ୍କଳ ସଂଗୀତ ସମାଜ ଏବଂ ବାଲେଶ୍ୱରର ନୃତ୍ୟସଂଗୀତ କଳା ମନ୍ଦିର ।

କଳାବିକାଶ କେନ୍ଦ୍ର ୧୯୫୨ରେ ସ୍ଥାପିତ ହୋଇଥିଲା ଗୋଟିଏ ଭଡ଼ାଘରେ ୰ବାବୁଲାଲ ଯୋଷୀଙ୍କ ଉଦ୍ୟମରେ । ଯଦିଓ ସେ ଅଣଓଡ଼ିଆ ଥିଲେ ତଥାପି ଓଡ଼ିଶାର କଳାସଂସ୍କୃତିର ପ୍ରଚାର ଓ ପ୍ରସାର ପାଇଁ ସାରା ଜୀବନକୁ ସମର୍ପଣ କରି ଦେଇଥିଲେ । ସେ ଅନୁଷ୍ଠାନଟି ଓଡ଼ିଶା ବାହାରେ ପଚାଶ ବର୍ଷରୁ ଉର୍ଦ୍ଧ୍ୱ ଓଡ଼ିଶୀ ନୃତ୍ୟ ଓ ସଂଗୀତ, ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଂଗୀତ ଏବଂ ଅନ୍ୟାନ୍ୟ ସଂଗୀତ ତଥା ବାଦ୍ୟଯନ୍ତ୍ରରେ ଶିକ୍ଷା ପ୍ରଦାନ କରି ସମ୍ମାନ ଓ ସ୍ୱୀକୃତି ପାଇଛି । ଏ ଅନୁଷ୍ଠାନ ସହିତ ପ୍ରାରମ୍ଭରୁ ଜଡ଼ିତ ଥିଲେ — ହରେକୃଷ୍ଣ ମହତାବ, ପ୍ରାଣକୃଷ୍ଣ ପରିଜା, ରାଧାନାଥ ରଥ, କମଳା ଦେବୀ ଚଟ୍ଟୋପାଧ୍ୟାୟ ପ୍ରଭୃତି । ଏଠାରେ ଶିକ୍ଷକ ଭାବେ ଯୋଗଦାନ କରିଥିଲେ ୰ବାଳକୃଷ୍ଣ ଦାସ, ୰କେଳୁଚରଣ ମହାପାତ୍ର, ୰ମାୟାଧର ରାଉତ, ୰କ୍ଷିତୀଶ୍ ଚନ୍ଦ୍ର ମୈତ୍ର ଇତ୍ୟାଦି । ଛାତ୍ର ହିସାବରେ ଯେଉଁମାନେ ପରବର୍ତ୍ତୀ ଜୀବନରେ ପ୍ରସିଦ୍ଧି ଲାଭ କରିଥିଲେ, ସେମାନେ ହେଲେ — ୰ଅକ୍ଷୟ ମହାନ୍ତି, ରାଖାଲ ମହାନ୍ତି, କୁମ୍‌କୁମ୍ (ଦାସ) ମହାନ୍ତି, କୁକୁମୀନା ଓ ଅନ୍ୟାନ୍ୟ ।

କଳାବିକାଶ କେନ୍ଦ୍ରର ଉଦ୍ୟମ ବିନା ଓଡ଼ିଶୀ ନୃତ୍ୟର ପୁନରୁଦ୍ଧାର କଳ୍ପନା କରାଯାଇପାରେନା । କେଳୁ ବାବୁ, ପଙ୍କଜ ବାବୁ, ଦେବବାବୁ, ବାଳକୃଷ୍ଣ ଦାଶ, କାଳୀଚରଣ ପଟ୍ଟନାୟକ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଧୀରେନ୍ ପଟ୍ଟନାୟକଙ୍କ ସମୂହ ଚେଷ୍ଟା ଓ ଗବେଷଣା ଫଳରେ ୧୯୫୭ରେ ମାଡ୍ରାସରେ ସଂଯୁକ୍ତା ପାଣିଗ୍ରାହୀଙ୍କ ନୃତ୍ୟ ପ୍ରଦର୍ଶନ, ନୃତ୍ୟ ବିଶାରଦ

ଓ ଆଲୋଚକମାନଙ୍କ ମନରେ ଓଡ଼ିଶୀ ନୃତ୍ୟ ଗଭୀର ରେଖାପାତ କରିଥିଲା ଓ ପରବର୍ତ୍ତୀ ଯୁଗରେ ଶାସ୍ତ୍ରୀୟ ନୃତ୍ୟର ସ୍ୱୀକୃତି ପାଇଥିଲା ।

ଚାର୍ଲସ ଫାବ୍ରୀ ଓ ଇନ୍ଦ୍ରାଣୀ ରହମାନ ଏ ନୃତ୍ୟର ବିଶେଷତ୍ୱ ବିଷୟରେ ମଧ୍ୟ ଦେଶ-ବିଦେଶରେ ଆଗରୁ ସମ୍ୟକ୍ ସୂଚନା ଦେଇଥିଲେ । ସେମାନଙ୍କର ଅବଦାନ ଭୁଲିଯିବା କଥା ନୁହେଁ । ମାୟାଧର ମାନସିଂହଙ୍କ ଅନୁରୋଧ କ୍ରମେ ଚାର୍ଲସ ଫାବ୍ରୀ ଓଡ଼ିଶା-ସଂସ୍କୃତିର କେତେକ ଦିଗକୁ ଦେଶବିଦେଶରେ ଲୋକଲୋଚନକୁ ଆଣି ପାରିଥିଲେ ।

ପଚାଶ ବର୍ଷ ପୂର୍ବେ ଶାସ୍ତ୍ରୀୟ ହିନ୍ଦୁସ୍ଥାନୀ ସଂଗୀତ-ପ୍ରେମୀଙ୍କ ସଂଖ୍ୟା ଓଡ଼ିଶାରେ ବହୁତ କମ ଥିଲା । ତଥାପି ଦ୍ୱିତୀୟ ମହାଯୁଦ୍ଧ ସମୟରେ ମୁଷ୍ଟିମେୟ ବ୍ୟକ୍ତି ନ୍ୟାସ୍‌ନାଲ୍ ମ୍ୟୁଜିକ୍ ଆସୋସିଏସନ୍ (National Music Association) ଗଠନ କରି ୧୯୪୭ ବେଳକୁ ଶାସ୍ତ୍ରୀୟ ସଂଗୀତ ଶିକ୍ଷା ଦେବାର ବନ୍ଦୋବସ୍ତ କରିଥିଲେ । ଶିକ୍ଷକଭାବରେ କୁଣ୍ଡଳା ଆଦିନାରାୟଣ ଓ ଛାତ୍ରୀଭାବେ ସୁନନ୍ଦା ପଟ୍ଟନାୟକ ପରବର୍ତ୍ତୀ ସମୟରେ ଜାତୀୟସ୍ତରରେ ସ୍ୱୀକୃତି ପାଇଥିଲେ । ଆସୋସିଏସନର ପ୍ରୋଗ୍ରାମରେ ଭାରତୀୟ ସଂଗୀତ ଜଗତର ତାରକାମାନେ ଅଂଶ ଗ୍ରହଣ କରିଥିଲେ, ଯଥା— ବିନାୟକ ପଟ୍ଟବର୍ଦ୍ଧନ, ସିଦ୍ଧେଶ୍ୱର ଦେବୀ, ଉସ୍ତାଦ ବିସ୍‌ମିଲ୍ଲା ଖାନ୍, ବଡ଼େ ଗୁଲାମ ଅଲ୍ଲି ଖାଁ, ପଣ୍ଡିତ ଯଶରାଜ, ଭି.ଜି, ଯୋଗ, ଶାନ୍ତା ପ୍ରସାଦ, ଡ଼ି.ଭି ପାଲୁସକର ଇତ୍ୟାଦି । ଯେଉଁ ନୃତ୍ୟନାଟିକା ଏ ଅନୁଷ୍ଠାନଟି ସେତେବେଳେ ପରିବେଷଣ କରିଥିଲା ଏବଂ ଓଡ଼ିଶାର ଦର୍ଶକଙ୍କ ମନରେ ନୂତନ ଆଶାର ସଂଚାର କରିଥିଲା, ତାକୁ ବହୁ ବରିଷ୍ଠ ନାଗରିକ ଏବେ ବି ମନେ ରଖିଥିବେ । ନୃତ୍ୟ ନାଟିକା, 'ମାନିନୀ', 'ଗୀତଗୋବିନ୍ଦ', 'ରତି ବିଳାପ', 'କୁମାରସମ୍ଭବ', 'ରାମାୟଣ', 'ମିତ୍ରଲାଭ', 'କୋଣାର୍କ ଜାଗରଣ' ଆଦି ଷ୍ଟେଜ୍ କ୍ରାଫ୍ଟ, ନୃତ୍ୟଶୈଳୀ ଓ ସଂଗୀତ ଦିଗରୁ ଅତି ଉଚ୍ଚକୋଟୀର ଥିଲା । ବର୍ତ୍ତମାନ ସେଭଳି ନୃତ୍ୟ ନାଟିକା ପ୍ରସ୍ତୁତ ହେବାର ଦୃଷ୍ଟାନ୍ତ ମିଳୁନାହିଁ । ଭୁବନେଶ୍ୱର ମିଶ୍ର ଏବଂ ହରିପ୍ରସାଦ ଚଉରାସିଆଙ୍କ ସଂଗୀତ ପରିଚାଳନା ଓ ବାଦ୍ୟବାଦନ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା ।

'ଉତ୍କଳ ସଂଗୀତ ସମାଜ' ୧୯୩୩ରୁ ଓଡ଼ିଶୀ ସଂଗୀତ ଓ ନୃତ୍ୟର ଅଗ୍ରଣୀ ଅନୁଷ୍ଠାନ । ପ୍ରିୟମ୍ବଦା ମହାନ୍ତି (ହେଜମାଦି) ଏଠାରୁ ଶିକ୍ଷାଲାଭ କରି ୟୁଥ ଫେସ୍‌ଟିଭାଲ୍‌ରେ ଓଡ଼ିଶୀ ନୃତ୍ୟ ପରିବେଷଣ କରି ସମସ୍ତଙ୍କ ହୃଦୟ ଜିଣି ପାରିଥିଲେ । ଏ ଅନୁଷ୍ଠାନ ମଧ୍ୟ ୧୯୩୮ରେ ସର୍ବଭାରତୀୟ ହରିଜନ ସଂଗୀତ ପ୍ରତିଯୋଗିତା ଆୟୋଜନ କରିବାରେ ସକ୍ଷମ ହୋଇଥିଲା । ସେ ଅନୁଷ୍ଠାନଟି ବିଭିନ୍ନ ସମୟରେ ବିଭିନ୍ନ ରୂପ ନେଲା ।

ମାନସିକ ସ୍ତରରେ ବାଲେଶ୍ୱରର ଦୂରତା ବର୍ତ୍ତମାନ ପ୍ରଦେଶର ରାଜଧାନୀଠାରୁ କମିଯାଇଛି । କିନ୍ତୁ ଦିନଥିଲା ଯେତେବେଳେ କଟକ ବା ଭୁବନେଶ୍ୱରଠାରୁ ବାଲେଶ୍ୱର ବହୁତ

ଦୂର ମନେ ହେଉଥିଲା । ସେତେବେଳେ ମାତ୍ର ଚାରୋଟି ଯାତ୍ରୀବାହୀ ରେଲ୍ ଚଳାଚଳ ହେଉଥିଲା । ବସ୍ ଯାତ୍ରା ସିଧାସଳଖ ନଥିଲା ବଡ଼ ବଡ଼ ନଦୀମାନଙ୍କରେ ପୋଲ ନଥିବା ଯୋଗୁଁ । ଫକୀରମୋହନ କଲେଜ ଜିଲ୍ଲାସ୍କୁଲରେ ଅବସ୍ଥାପିତ ଥିଲା । ଟିଭିର ଆଗମନ ହୋଇନଥିଲା, କମ୍ପ୍ୟୁଟର କଳ୍ପନାର ବାହାରେ । ମୋବାଇଲ ତ ସ୍ୱପ୍ନର କଥା । ଡ଼ାଏଲିଂ ସୁବିଧା ମଧ୍ୟ ନଥିଲା । ଏକ୍ସଚେଂଜ ଅପରେଟର ମାଧ୍ୟମରେ କଥାବାର୍ତ୍ତା କରା ଯାଉଥିଲା କଟକ ଭଳି ସହରରେ ।

ଏଭଳି ପରିସ୍ଥିତିରେ ଗୋଟିଏ ଅନୁଷ୍ଠାନକୁ ବଂଚାଇ ରଖିବା; କଣ୍ଠଶିଳ୍ପୀ, ନୃତ୍ୟଶିଳ୍ପୀଙ୍କୁ ଶିକ୍ଷା ଦେଇ ଗଢ଼ି ତୋଳିବା ବିନା ସ୍ୱାର୍ଥରେ, ବିନା ପ୍ରଚାରରେ, ଆଜିକାର ସମୟରେ ଅବାସ୍ତବ ଲାଗୁଛି । କିନ୍ତୁ ଏହା ଏକ ନିରାଟ ସତ୍ୟ । ବାଲେଶ୍ୱର ନୃତ୍ୟ-ସଂଗୀତ-କଳା ମନ୍ଦିର ସେଭଳି ଏକ ବିରଳ ଅନୁଷ୍ଠାନ ।

ବର୍ତ୍ତମାନ ସମସ୍ତେ ସରକାରୀ ସାହାଯ୍ୟ ଉପରେ ନିର୍ଭର କରୁଛନ୍ତି । ଜିଲ୍ଲାମାନଙ୍କରେ ସରକାରୀ ଖର୍ଚ୍ଚରେ ମହୋତ୍ସବମାନ ପାଳନ କରାହେଉଛି । ଟିଭି ମାଧ୍ୟମରେ ପ୍ରଚାର ହେଉଛି । ବ୍ୟବସାୟୀ ଓ ଶିଳ୍ପ ପ୍ରତିଷ୍ଠାନମାନେ ପୃଷ୍ଠପୋଷକତା କରୁଛନ୍ତି । ତାଂକର ବ୍ୟାନର ସାଂସ୍କୃତିକ ଉତ୍ସବରେ ଝୁଲୁଛି । ସେ ଦିନରେ ଏସବୁ କିଛି ନଥିଲା ।

ମନେ ପଡ଼ୁଛି, ବାଲେଶ୍ୱରରେ ସଂଗୀତ ଶିକ୍ଷକ ଓ ଗାୟକ ସୁକୁମାର ବାବୁ (ସାହୁ) ସାଇକେଲରେ ଆସି ପ୍ରତିଦିନ ସଂଧ୍ୟାରେ ଆମମାନଙ୍କୁ ସମୂହ ସଂଗୀତ ଶିକ୍ଷା ଦେଉଥିଲେ କଲେଜ ପରିସରରେ । ପ୍ରଚେଷ୍ଟା ଥିଲା, କେମିତି ସୁନାମ ଆଣି ପାରିବୁ । ଖାଲି ହାରମୋନିୟମ୍ ଓ ତବଲା । ଅନ୍ୟ ବାଦ୍ୟଯନ୍ତ୍ର ନଥାଏ । ସମୂହଗୀତରେ ଛ' ଜଣ ଛାତ୍ର ଓ ଜଣେ ଛାତ୍ରୀ ଫୁଲରା ପରିଡ଼ା । ସେତେବେଳେ ସ୍କୁଲ-କଲେଜ ଛାତ୍ରୀମାନେ ନାଚଗୀତରେ ବେଶି ଭାଗ ନେଉ ନଥିଲେ । ପରିବାର କିମ୍ବା ସମାଜର ପ୍ରୋତ୍ସାହନ, ପ୍ରେରଣା ନଥିଲା । ସେ ଛାତ୍ରୀଟିର ସାହସିକତା ଏବେ ବି ମୋତେ ଆଚମ୍ବିତ କରୁଛି । ଆମେ ସମସ୍ତେ ପ୍ରତିଯୋଗିତାରେ ଭାଗନେଲୁ । କି ଆନନ୍ଦ ! କି ଉନ୍ମାଦନା ! !

ସୁକୁମାର ବାବୁ ତାଂକର ସାଂସାରିକ ଦାୟିତ୍ୱ ତୁଲାଇ ବିନା ପାରିଶ୍ରମିକରେ ସବୁଦିନ ପହଞ୍ଚୁଥିଲେ ରିହେରସାଲ୍ ପାଇଁ । ପାରଂପରିକ,ଆଧୁନିକ ଗୀତର ବହୁ ସ୍ୱର ସଂଯୋଜନା ସେ କରୁଥିଲେ । ଏବେ ସେ ନିଷ୍ଠା ଦେଖିବାକୁ ମିଳୁନାହିଁ । ବାଲେଶ୍ୱରବାସୀ ଏବଂ ଉତ୍ତର ଓଡ଼ିଶାର କଳାପ୍ରେମୀ ପୂଅଝିଅଙ୍କ ପାଇଁ 'ନୃତ୍ୟସଂଗୀତ କଳା ମନ୍ଦିର' ଏକ ବତିଘର ପରି ଆଶାର କିରଣ ଦେଉଥିଲା । ସେତେବେଳେ ୰ଜ୍ଞାନରଂଜନ ପଟ୍ଟନାୟକ, ଶିଶିର କୁମାରୀ ପଟ୍ଟନାୟକ, ୰ସରୋଜିନୀ ପାଣିଗ୍ରାହୀ, ୰ହରିବଂଧୁ ଶତପଥୀ, ଯଦୁନାଥ ଦାଶ ମହାପାତ୍ର, ୰କୃଷ୍ଣପ୍ରସାଦ ମହାନ୍ତି, ହର ପ୍ରସାଦ ମହାପାତ୍ର, ଯୋଗେଶ ଚନ୍ଦ୍ର ଦାସ, ୰ସନ୍ନ୍ୟାସ ନନ୍ଦ, ୰ସୁକୁମାର ସାହୁ ରମାନାଥ ମହାପାତ୍ର ପ୍ରଭୃତି କତିପୟ ବ୍ୟକ୍ତିଙ୍କର ଅବଦାନ ଚିରସ୍ମରଣୀୟ ।

ମୁଁ କଟକରେ ଗୁରୁ କେଳୁଚରଣ ମହାପାତ୍ର ଓ ସଂଯୁକ୍ତା ପାଣିଗ୍ରାହୀଙ୍କୁ ସାଇକେଲରେ ଯିବାର ଦେଖିଛି ନୃତ୍ୟ ପରିବେଷଣ କରିବା ପାଇଁ । ମୀନାକ୍ଷି ନନ୍ଦ, ଚମ୍ପକବଲ୍ଲରୀ ଓ ଅନୁସୂୟା ପଟ୍ଟନାୟକଙ୍କ ଭଳି ସେତେବେଳର ନାମକରା ଓଡ଼ିଶୀ ନୃତ୍ୟାଙ୍ଗନା କାଳକ୍ରମେ ଅପସରି ଗଲେ । କେବଳ ସେମାନଙ୍କ ମଧ୍ୟରୁ ସଂଯୁକ୍ତା ନୃତ୍ୟକୁ ପେଷା ଭାବେ ଗ୍ରହଣ କଲେ । କାଁ ଭାଁ ପ୍ରୋଗ୍ରାମ; ତଥାପି କି ଉଲ୍ଲାସ ସେତେବେଳର କଳାକାରମାନଂକର !

ଆଜିକାଲି ସମସ୍ତେ ଦୋଷ ଦେଉଛନ୍ତି ସରକାରଙ୍କୁ । ଥିଏଟରପାଇଁ ଦର୍ଶକ ନାହାନ୍ତି । ଦିନଥିଲା କଟକ ସହରରେ ଦୁଇଟି ପେଷାଦାର ଥିଏଟର ଦଳ- 'ଅନ୍ନପୂର୍ଣ୍ଣା' ଓ 'ଜନତା' ବର୍ଷରେ ୩୬୫ ଦିନ ନାଟକ ପରିବେଷଣ କରୁଥିଲେ । ସାରା ପୃଥିବୀରେ ଏଭଳି ଦୃଷ୍ଟାନ୍ତ ନାହିଁ । ବାବି ଓ ପୀରଙ୍କ ଭଳି କଳାକାର ସାଇକେଲ୍‌ରେ ଆସି ନାଟକରେ ଅଭିନୟ କରୁଥିଲେ । ରିହେରସାଲ ପାଇଁ ସମୟ ଦେଉଥିଲେ । କୌଣସି କୌଣସି ନାଟକ ପାଇଁ ଆଡ୍‌ଭାନ୍ସ ବୁକିଂ କରିବାକୁ ପଡୁଥିଲା । ସେତେବେଳେ କଣ ଓଡ଼ିଆ ଲୋକେ ବେଶି ଧନୀ ଥିଲେ ? ନାଁ, ମାତ୍ର ରୁଚି ଥିଲା; ଏବେ ନାହିଁ ।

ବର୍ତ୍ତମାନ ଭଜନ ଅଶ୍ଳୀଳ । ନୃତ୍ୟରେ ଲାସ୍ୟ ଓ ଛନ୍ଦର ଅଭାବ । ଐତିହାସିକ କୀର୍ତ୍ତିରାଜି ଅବହେଳାରୁ ଧ୍ୱଂସପ୍ରାୟ । ଓଡ଼ିଶୀ ଖାଦ୍ୟ ଖୋଜିବାକୁ ପଡୁଛି । ମୋଗଲାଇ ଓ ଚାଇନିଜ୍ ଖାଦ୍ୟ ଖାଇ ଆମେ ଗର୍ବିତ । ପାରଂପରିକ ହସ୍ତଶିଳ୍ପ, ହସ୍ତକଳାରେ ପାରିଦର୍ଶିତା କେବଳ ମୁଷ୍ଟିମେୟ ଲୋକଙ୍କ ପାଖରେ । ଓଡ଼ିଶା ଶାଢ଼ୀର ନକଲ ସବୁଆଡ଼େ । ରଜ ଓ କୁଆଁରପୂନେଇ ପାଳନ ହେଉଛି ଅଡ଼ିଟୋରିୟମ୍‌ରେ । ଗୋଟିଏ ବିକୃତ ରୁଚିର ସମାଜ ଓ ଏକ ବିଷମ ପରିସ୍ଥିତି ସୃଷ୍ଟି ହୋଇଛି ।

ବର୍ତ୍ତମାନ ଘଡ଼ିସନ୍ଧିର ମୁହୂର୍ତ୍ତ । ଜଗତୀକରଣରେ ଆଂଚଳିକ ସଂସ୍କୃତିର ସ୍ଥିତି ଓ ପ୍ରତିଷ୍ଠା ପାଇଁ ଏକ ବିରାଟ ଆହ୍ୱାନ । ଜୀବନ ମରଣର ଏକ ଭୟାନକ ସଂକଟ ମଧ୍ୟରେ କେତେକ ପୁରାତନ ସଂସ୍କୃତି ଓ ପରଂପରା ଦଣ୍ଡାୟମାନ । ସଚେତନ ନାଗରିକ ଏବଂ ଅନୁଷ୍ଠାନମାନଙ୍କର ଦାୟିତ୍ୱ ଆଗଠାରୁ ଅଧିକ ।

ଆଜି ଗୋଟିଏ ରୁଚିପୂର୍ଣ୍ଣ ସମାଜ ଓ ରୁଚିପୂର୍ଣ୍ଣ ସଂସ୍କୃତିକୁ ବଂଚାଇ ରଖିବାର ଦାୟିତ୍ୱ ଆମ ସମସ୍ତଙ୍କର ।

***

# ପ୍ରତିରକ୍ଷାର ଭିତ୍ତିଭୂମିରୁ

ଜାତୀୟ ପ୍ରତିରକ୍ଷା ସମ୍ପର୍କରେ ଛାତ୍ର ସମ୍ମିଳନୀରେ ଯୋଗଦେଇ ମୁଁ ଯେତେବେଳେ ଏଇ ଅର୍ଦ୍ଧରାତ୍ରରେ 'ରଶ୍ମି' ପାଇଁ କିଛି ଲେଖୁଚି ସେତେବେଳେ ଝରକା ଦେଇ ଦେଖା ଯାଉଚି କୁହୁଡ଼ିଘେରା ଆହ୍ଲାବାଦ ସହର । ବର୍ତ୍ତମାନ ଏଠି ଭୀଷଣ ଥଣ୍ଡା ପଡ଼ିଛି । ବୋଧହୁଏ ଆପଣମାନେ ଯଦି ମୋ ସଙ୍ଗେ ବର୍ତ୍ତମାନ ଏଠି ଥା'ନ୍ତେ ତାହାହେଲେ ଏଇ ଥଣ୍ଡାକୁ ଅନୁଭବ କରିପାରନ୍ତେ । ମୁଁ ଏଇ ଶୀତ କଥା ଲେଖିଲାବେଳେ ମୋର ମନେ ପଡ଼ୁଛି, ଲାଡ଼ାଖ୍ ଓ ନେଫାରେ ଆମର ସୀମାନ୍ତକୁ ଜଗିଥିବା ଜଓ୍ୱାନ୍‌ମାନଙ୍କ କଥା । ଦଶହଜାର ଫୁଟ୍ ଉପରେ ମେଘରାଜ୍ୟରେ ସେମାନେ ଯୁଦ୍ଧ କରୁଛନ୍ତି; ନିଜର ଶେଷ ରକ୍ତବିନ୍ଦୁ ଦେଇ । ପରିବାର, ପରିଜନ, ବନ୍ଧୁବାନ୍ଧବଙ୍କର ସବୁ ମାୟା , ମମତା, ସ୍ନେହ, ସହାନୁଭୂତି, ସୌହାର୍ଦ୍ଦ୍ୟକୁ ପଛରେ ପକାଇ ସେମାନେ ଦିନରାତି ଜଗି ରହିଛନ୍ତି, ଶତ୍ରୁର ଗୁଳିସାମନାରେ ନିଜର ମାତୃଭୂମିର ସ୍ୱାଧୀନତାକୁ ରଖିବାପାଇଁ । ସେମାନେ ସେଠି ଆଜି ଲଢୁଛନ୍ତି — କାରଣ 'ଆସନ୍ତା କାଲି ଆମପାଇଁ ନିରାପଦ ରହିବ ।' ସେମାନେ ସେଠି ପ୍ରାଣବଳି ଦେଉଛନ୍ତି — କାରଣ 'ଆମେ ସୁଦୂର ଓଡ଼ିଶାରେ ନିଃଶଙ୍କରେ ନିଃଶ୍ୱାସ ମାରି ପାରିବୁ ।'

ଜାତି ପକ୍ଷରେ ଏ ଏକ କଠୋର ପରୀକ୍ଷା । ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଲେ ଆମର ସ୍ୱାଧୀନତା ଓ ସଂସ୍କୃତିକୁ ଧୂଳିସାତ୍ କରିବାକୁ କୌଣସି ବର୍ଗର ଶତ୍ରୁ କେବେ ସାହସ କରିବ ନାହିଁ ।

ସମୟର ସଙ୍କଟ ବିଷୟ ଆଜି ଯୁବରାଜ କରଣ ସିଂ ଜାମୁ ଓ କାଶ୍ମୀରର ସଦର-ଇ-ରିୟାସତ୍, ତାଙ୍କର ସମ୍ମିଳନୀ ଉଦ୍‌ଘାଟନ ଭାଷଣରେ ଉଲ୍ଲେଖ କରିଥିଲେ । ସେଥି ସଙ୍ଗେ ସଙ୍ଗେ ଭାରତୀୟ ଛାତ୍ରସମାଜକୁ ଆହ୍ୱାନ କରିଥିଲେ ନିଜର କର୍ତ୍ତବ୍ୟନିଷ୍ଠାର ପରିଚୟ ଦେବାପାଇଁ ।

ସେ କହିଲେ — ଭାରତ ଓ ଚୀନର ଯେଉଁ ସଘଂର୍ଷ ଚାଲିଛି ତାହା କେବଳ କେତେକ ଅଞ୍ଚଳ ଦଖଲ କରିବା ପାଇଁ ନୁହେଁ । ଚୀନ୍‌ର ଏ ଯୁଦ୍ଧ ଆହ୍ୱାନ କେବଳ ଏକ ସାମରିକ ଆହ୍ୱାନ ନୁହେଁ । ଏହା ପଛରେ ରହିଛି ଅର୍ଥନୀତିକ ସଘଂର୍ଷ; ଆଦର୍ଶଗତ ସଘର୍ଷ, କୁଟନୀତିକ ସଘଂର୍ଷ । ନେଫାରେ ଆମର ବିପର୍ଯ୍ୟୟ ଫଳରେ ପୃଥିବୀ ଇତିହାସରେ ଏହା ପ୍ରମାଣିତ ହେଲା ଯେ ଏକ ଗଣତାନ୍ତ୍ରିକ ଜନମଙ୍ଗଳ ଶାନ୍ତିକାମୀ ରାଷ୍ଟ୍ର ଗୋଟିଏ ଏକଛତ୍ରବାଦୀ ଯୁଦ୍ଧଖୋର

ଶକ୍ତି ନିକଟରେ ତିଷ୍ଠି ପାରିବ ନାହିଁ । ସବୁ ଦେଶର ଶାସକ ତଥା ଗଣତନ୍ତ୍ରରେ ବିଶ୍ୱାସୀ ଲୋକମାନଙ୍କ ମନରେ ଏ ବିପର୍ଯ୍ୟୟ ଏକ ଦାରୁଣ ଆଘାତ ଦେଇଛି । ତେଣୁ କୌଣସି ଗଣତାନ୍ତ୍ରିକ ଶାନ୍ତିକାମୀ ଦେଶ ବଞ୍ଚି ରହିବାକୁ ହେଲେ ତାକୁ ସାମରିକ ଶକ୍ତି ବୃଦ୍ଧି କରିବାକୁ ପଡ଼ିବ । ଗୁଳିର ଉତ୍ତର ଗୁଳିରେ ହିଁ ଦେବାକୁ ପଡ଼ିବ, କଥାରେ ନୁହେଁ ।

ଅର୍ଥନୈତିକ କ୍ଷେତ୍ରରେ ଚୀନ୍ ପ୍ରତିପାଦିତ କରିବାକୁ ଚାହେଁ ଯେ କମ୍ୟୁନିଷ୍ଟବାଦଦ୍ୱାରା ଯେଉଁ ପ୍ରଗତି ହାସଲ କରାଯାଇ ପାରିବ ତାହା ଗଣତାନ୍ତ୍ରିକ ପଦ୍ଧତିରେ ଅସମ୍ଭବ ।

ଏହି ବିବାଦ ଫଳରେ ଏକ ଆଦର୍ଶଗତ ସଙ୍ଘର୍ଷ ଉପୁଜିଛି । ଚୀନ୍‌ର ଆକ୍ରମଣ କେବଳ ଆମ ସୀମାନ୍ତ ଉପରେ ନୁହେଁ, ସେ ଆକ୍ରମଣ ଆମ ଭାରତୀୟ ଜୀବନଧାରା ଉପରେ । ସଂସ୍କୃତି ଉପରେ । ଯେଉଁ ସଂସ୍କୃତି ଆଜିକୁ ହଜାର ହଜାର ବର୍ଷ ଧରି ବହୁ ଘାତ ପ୍ରତିଘାତ ଦେଇ ବଞ୍ଚି ରହିଛି ମାନବସମାଜକୁ ଚିରନ୍ତନ ସତ୍ୟ ଦେବାପାଇଁ । ଏ ଦେଶକୁ ହୁନ୍, ଶକ, ମୋଗଲ, ଇଂରେଜ ସମସ୍ତେ ଆସିଛନ୍ତି । ସମସ୍ତେ ଲୁଣ୍ଠନ କରିଛନ୍ତି ଭାରତକୁ ; କିନ୍ତୁ କେହି ଏ ଭାରତୀୟ ଜୀବନଧାରାରେ ବିପ୍ଳବ ଆଣିପାରି ନାହାନ୍ତି । ଭାରତୀୟ ସଂସ୍କୃତିର ସେଇଠାରେ ହିଁ ବୈଶିଷ୍ଟ୍ୟ । ଏ ସଂସ୍କୃତି ସବୁ ଦର୍ଶନର ସାର, ସବୁ ଧର୍ମର ମୂଳ ଏବଂ ପୁରାତନ ମଧ୍ୟରେ ଚିର ନୂତନ । ସେଥିଲାଗି ଏହା ସନାତନ । ଭାରତୀୟ ଜୀବନଧାରା ଓ ସଂସ୍କୃତି ଏକ synthesis.

ସମଗ୍ର ଏସିଆର ନେତୃତ୍ୱ ନେବାପାଇଁ ଏ ଯେଉଁ ବିବାଦ ଲାଗିଛି ସେଥିରେ ଚୀନ ଶାସକମାନଙ୍କର ଆକାଂକ୍ଷା ବହୁ ପରିମାଣରେ ସଫଳ ହୋଇଛି । ପ୍ରଥମତଃ ସେମାନେ ସାମୟିକ ଭାବରେ ଚୀନ୍-ଅଧିବାସୀଙ୍କର ମନକୁ ଦିଗ୍‌ବିଜୟ ଆଡ଼େ ଟାଣି ନେଇ ପାରିଛନ୍ତି । ଯାହା ଫଳରେ ଚୀନ୍ ଭିତରେ ଖାଦ୍ୟାଭାବ ଓ ଦୁର୍ଭିକ୍ଷ ଫଳରେ ଚୀନ୍ କମ୍ୟୁନିଷ୍ଟ ସରକାରଙ୍କ ଅପାରଗତା ଯୋଗୁଁ ଯେଉଁ ଅସନ୍ତୋଷ ଓ କମ୍ୟୁନିଷ୍ଟ-ବିରୋଧୀ ବିପ୍ଳବର ସୂତ୍ରପାତ ହୋଇଥିଲା— ସେଥିରୁ ସେମାନେ ନିବୃତ୍ତ ହେଲେ । ଦ୍ୱିତୀୟରେ ଚୀନ୍‌ର ଯୁଦ୍ଧବିରତି ପ୍ରସ୍ତାବ ଫଳରେ ଚୀନ୍ ସାବ୍ୟସ୍ତ କରିବାକୁ ଚାହେଁ ଯେ ସେ ହେଉଛି ଏକମାତ୍ର ଶାନ୍ତିକାମୀ ରାଷ୍ଟ୍ର ଓ ତୃତୀୟରେ ଚୀନ୍ ଯେଉଁ ଯେଉଁ ଅଞ୍ଚଳ ଦଖଲ କଲା ସେ ହେଉଛି ଚୀନ୍‌ର ପ୍ରକୃତ ଅଞ୍ଚଳ, ତାକୁ ଭାରତ ସରକାର ବଳପୂର୍ବକ ଅଧିକାର କରି ନେଇଛନ୍ତି । ଏହିପରି ଭାବରେ ଚୀନ୍ ପୃଥିବୀର ଲୋକମତ ନିଜ ପକ୍ଷରେ ସୃଷ୍ଟି କରିବାକୁ ଚାହେଁ; ଯାହା ଫଳରେ ଏସିଆର ଛୋଟ ଛୋଟ ରାଷ୍ଟ୍ରଗୁଡ଼ିକ ଭାରତର ପ୍ରଭାବ ପରିସରମଧ୍ୟରୁ ଅପସରି ଯାଇ ଚୀନ୍‌ର ନେତୃତ୍ୱକୁ ଗ୍ରହଣ କରିବେ । କଲମ୍ବୋ ସମ୍ମିଳନୀର ବିବରଣୀରୁ ଚୀନ୍‌ର ଏହି ସଫଳତା କେତେକ ପରିମାଣରେ ପ୍ରମାଣିତ ହେଉଛି ।

ମୁଁ ଖାଲି ଭାବୁଛି ଆମ ଜଓ୍ୱାନମାନଙ୍କ କଥା । ଚୀନର ଶାନ୍ତି ପ୍ରସ୍ତାବ ଫଳରେ ସେମାନଙ୍କର ମାନସିକ ଅବସ୍ଥା । ଅନୁମାନ କରନ୍ତୁ ଯେଉଁ ଯୋଦ୍ଧା ଯୁଦ୍ଧରେ ପ୍ରାଣବଳି ଦେଇ

ନିଜର ମାତୃଭୂମିକୁ ରକ୍ଷା କରିବା ପାଇଁ ଯାଇଛି ସେ ଆଜି ଦୟାର ପାତ୍ର । କି ଅପମାନ ତାର ବ୍ୟକ୍ତିତ୍ୱକୁ ! ଚୀନ ଆଜି ତାକୁ ପରାସ୍ତ କରି ପରେ ଦୟା ଦେଖାଇ ଦଖଲ କରିଥିବା ଅଞ୍ଚଳରୁ ଅପସରି ଯାଉଛି । ମନଇଚ୍ଛା ଯୁଦ୍ଧବନ୍ଦୀକୁ ଅପମାନ ଦେଇ ରେଡ଼କ୍ରସ ବାହିନୀକୁ କ୍ଷତ ବିକ୍ଷତ ସୈନ୍ୟ ଫେରାଇ ଦେଉଛି । ଏହାଠାରୁ ବେଶୀ ଅପମାନ କଣ ହୋଇପାରେ ଜଣେ ଯୋଦ୍ଧା ପାଖରେ ? ଆମେ କଣ ଚୀନର ଦୟାର ପାତ୍ର ? ଜୱାନମାନେ ଚାହାନ୍ତି ନିଜର ସାମରିକ ପରାକାଷ୍ଠା ଦେଖାଇ ଭାରତୀୟ ଅଞ୍ଚଳକୁ ଚୀନ ଅଧିକାରରୁ ମୁକ୍ତ କରିବା ପାଇଁ । ଏ କଥା ଆସାମର ଭାଇ ସୁଭାଷଚନ୍ଦ୍ର ଗୋସ୍ୱାମୀ ଆଜି ସନ୍ଧ୍ୟାରେ ଚା' ଖାଇଲାବେଳେ କହୁଥିଲେ । ସେ ଗୌହାଟୀର ଇଞ୍ଜିନିୟରିଂ କଲେଜର ଛାତ୍ର । କି ଅସୀମ ଧୈର୍ଯ୍ୟ, ସାହସ ତାଙ୍କର ! କଥା ଛଳରେ ସେ କହିଲେ ଯେ ଆମର ନେତୃବୃନ୍ଦ ତଥା ଶାସକ ଗୋଷ୍ଠୀଙ୍କର ଗୋଟିଏ ଅଭାବ ରହୁଛି; ତାହା ହେଉଛି — ମନୋବଳ । କେତେକଙ୍କର ଦେଶପ୍ରୀତି ନାମରେ ଛଳନାତ୍ମକ ଭାବପ୍ରବଣତା ରହିଛି । ଆସାମବାସୀ ଚୀନ୍‌ର ଆକ୍ରମଣର ପ୍ରତିରୋଧ କରିବାକୁ ଦୃଢ଼ପ୍ରତିଜ୍ଞ । ସେମାନେ ଯେଉଁ ପଦକ୍ଷେପ ନେଇଛନ୍ତି ତାହା ସେ ମୋ ସହିତ ଆଲୋଚନା କରିଥିଲେ । ତା ମଧ୍ୟରୁ ସବୁଠୁ ଉଲ୍ଲେଖଯୋଗ୍ୟ କଥା ହେଉଛି ଯେ ଆସାମରେ ଛାତ୍ରମାନେ ବିନା ଦ୍ୱିଧାରେ ଏନ.ସି.ସି.ରେ ଯୋଗ ଦେଇଛନ୍ତି । ସେଥିଲାଗି କେଉଁଠି ବାଧ୍ୟତାମୂଳକ ବ୍ୟବସ୍ଥା ଗ୍ରହଣ କରିବାକୁ ପଡୁ ନାହିଁ । ଆମ ପ୍ରଦେଶରେ ଛାତ୍ରମାନେ ସେହିପରି ସ୍ୱେଚ୍ଛାକୃତ ଭାବରେ ଏନ୍.ସି.ସି. ବା ବେସାମରିକ ସଂସ୍ଥାରେ ତାଲିମ ପାଇବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରିବା ଦରକାର ।

ଅନୁମାନ କରନ୍ତୁ ସେଲା ଘାଟି ସମୁଦ୍ର ପତନଠାରୁ ୯୦୦୦ ଫୁଟ ଉଚ୍ଚରେ; ଶୀତ ଦିନରେ ସେଠି ସବୁ ରାସ୍ତା ବନ୍ଦ ହୋଇଥାଏ ବରଫପାତ ଫଳରେ । ସେଠି ଆମର ଜୱାନମାନେ ଅଳ୍ପ କିଛି ସରଞ୍ଜାମ ନେଇ ଭାରତୀୟ ପବିତ୍ର ଭୂମିର ପ୍ରତି ଇଞ୍ଚ ରକ୍ଷା କରିବା ପାଇଁ ଦିନ ରାତି ବରଫାଚ୍ଛାଦିତ, ଜନମାନବଶୂନ୍ୟ, ନିବିଡ଼ ଅରଣ୍ୟ, ସଭ୍ୟତାଠାରୁ ଦୂରରେ ଥିବା ଏକ ପାର୍ବତୀୟ ଅଞ୍ଚଳରେ ନିଜର ଜୀବନ ଦେଇଛନ୍ତି । ଏହି ପ୍ରାଣବଳି ପଛରେ ଯେତିକି ତ୍ୟାଗ ନିହିତ ରହିଛି ଆମେ ଯଦି ସେତିକି ଉପଲବ୍ଧି କରିପାରିବା ତେବେ ହୁଏତ ଆମର ଦେଶପ୍ରେମର ବହ୍ନି ଜଳି ରହିବ । ବର୍ତ୍ତମାନ ଯେଉଁ ଆଶଙ୍କା କେତେକଙ୍କ ମନରେ ସ୍ଥାନ ପାଉଛି ସେ ଯଦି କିଛିଦିନ ଯୁଦ୍ଧ ପରିସ୍ଥିତି ଏହିପରି ଶିଥିଳ ହୋଇଯାଏ, କିଛି ତାଜା ଖବର ନ ଘଟେ, ତେବେ ଆମ ମଧ୍ୟରେ ଜଡ଼ତା ଚାଲି ଆସିବ । ଆମେ ଚୀନ ସହିତ ଯୁଦ୍ଧକୁ ଏକ ଦୈନନ୍ଦିନ ଘଟଣା ବୋଲି ଧରିନେବୁ ଓ ଆମର ପ୍ରସ୍ତୁତି ବାଧାପ୍ରାପ୍ତ ହେବ । ମୋ ମତରେ ସେପରି ଚିନ୍ତା ମନରେ ସ୍ଥାନ ପାଇବା ଆଦୌ ଉଚିତ୍ ନୁହେଁ । କାରଣ ମୋର ମନେହୁଏ ଯେ ଭାରତୀୟ ଇତିହାସରେ ବୋଧହୁଏ ଏପରି ସ୍ୱେଚ୍ଛାକୃତ ଜନଜାଗରଣ କେବେ ଦେଖାଯାଇ ନ ଥିଲା । ଜାତିର ନେତାଙ୍କ ଆହ୍ୱାନରେ ଦେଶବାସୀ ଯେଉଁ ଅପୂର୍ବ ସହଯୋଗ ଦେଖାଇଛନ୍ତି

ତାହା ବିଶ୍ୱବାସୀଙ୍କୁ ବିସ୍ମିତ କରିଛି, ଚୀନ ସରକାରଙ୍କ ସବୁ ହିସାବ ନିକାଶକୁ ଭୁଲ କରି ଦେଇଛି ଓ ଆମ ମନରେ ଅକଳ୍ପନୀୟ ଆତ୍ମବଳ ଆଣି ଦେଇଛି । ଭାରତୀୟ ଜାତିର ସେଇଠାରେ ହିଁ ବୈଶିଷ୍ଟ୍ୟ— Unity in diversity। ଭାରତୀୟ ସଂସ୍କୃତି — ଜଣେ ଇଂରେଜ ଲେଖକଙ୍କ ଭାଷାରେ — a mosaic of culture; ବର୍ତ୍ତମାନ ପ୍ରଶ୍ନ ଉଠୁଛି ଯେ ଏଇ ଜନଜାଗରଣକୁ ଆମର ନେତୃବୃନ୍ଦ କେତେ ଦୂର ଠିକ୍ ମାର୍ଗରେ ନେତୃତ୍ୱ ଦେଇପାରିବେ ? ଆସାମର ବଂଧୁ ବଡୁଆ ସେ ବିଷୟରେ ମତେ ତାଙ୍କ ନିଜର ମତାମତ କହିଲେ — ବର୍ତ୍ତମାନ ଯେଉଁ କଥା କୁହାହେଉଛି ଯେ ଆମେ ଆମର ଶେଷ ରକ୍ତବିନ୍ଦୁ ଦେଇ ଭାରତଭୂମିକୁ ରକ୍ଷା କରିବୁ ତାହା କେବଳ ଗୋଟାଏ ପରାଜୟ ସ୍ୱୀକାର କରୁଥିବା ଦେଶର ମନର ଅବସ୍ଥା । ବର୍ତ୍ତମାନ ଏପରି ଅବସ୍ଥା ଉପୁଜି ନାହିଁ ଯେ ଯେଉଁଥିପାଇଁ ଆମେ ଆମର ଅନ୍ତିମ ପରିଣତି କଥା ଚିନ୍ତା କରିବା ।

ଆଜି ସକାଳେ ଆଲୋଚନା ବେଳେ ପ୍ରଥମେ ପ୍ରଶ୍ନ ଉଠିଲା ଯେ ଗୃହର କାର୍ଯ୍ୟ ଇଂରେଜୀ କି ହିନ୍ଦୀ ଭାଷାରେ ହେବ । ଏଥିରେ ବହୁ ମତ ପ୍ରକାଶ ପାଇଲା । ବିବାଦ ଏପରି ସ୍ତରକୁ ଗଲା ଯେ ମନେହେଲା ସମସ୍ତେ କାହିଁକି ଆହ୍ଲାବାଦକୁ ଆସିଛନ୍ତି ସେ ବିଷୟରେ ସଚେତନ ନାହାନ୍ତି । ଜାତୀୟ ବିପଦ ବେଳେ ଭାଷା ଓ ପ୍ରଦେଶଗତ ସଙ୍କୀର୍ଣ୍ଣତା କୌଣସି ରୂପରେ ପ୍ରକାଶ ପାଇବା ଦେଶଦ୍ରୋହୀତା ସଙ୍ଗେ ସମାନ । ସେହି ବିବାଦ ଆଜି ରାତି ଅଧିବେଶନରେ ମଧ ପ୍ରକାଶ ପାଇଲା ଅନ୍ୟ ରୂପରେ । ଆଜିର ରାତି ଅଧିବେଶନ ୧୦ଟାରୁ ୧ଟା ପର୍ଯ୍ୟନ୍ତ ବସିଥିଲା । ଏଠି ଭାଇ ରାମଲୁଭାୟାଙ୍କ କଥା ଟିକେ କହିରଖେ । ଭାଇ ରାମଲୁଭାୟା NCUSI ର ଜଣେ ଭୂତପୂର୍ବ ସଭାପତି । ବର୍ତ୍ତମାନ ଆମେରିକାରେ ପଢୁଛନ୍ତି । ସେ ଏହି ସମ୍ମିଳନୀରେ ଯୋଗ ଦେବାକୁ ସୁଦୂର ଆମେରିକାରୁ ଚାଲି ଆସିଥିଲେ ଓ ସବୁ ଅଧିବେଶନ ପରିଚାଳନା କରୁଥିଲେ । ସେ ଖାଲି ବିଜ୍ଞ ନୁହନ୍ତି, ନମ୍ର, ଭଦ୍ର, ସରଳ ଓ ବିଚକ୍ଷଣ ମଧ । ତାଙ୍କ ସଂସ୍ପର୍ଶରେ ଆସିବାର ବିଶେଷ ସୁବିଧା ପାଇଲିନି । କାରଣ ଆମେ ଦୁହେଁ ବିଭିନ୍ନ କାର୍ଯ୍ୟରେ ସବୁବେଳେ ବ୍ୟସ୍ତ ରହୁଥିଲୁ । ତେବେ ତାଙ୍କ ସହିତ ଯେତିକି ମିଶିବାର ସୁଯୋଗ ପାଇଲି ସେଥିରୁ ବହୁତ କିଛି ଶିଖିଥିଲି । ଏଇତ ରାତି ଅଧିବେଶନର କଥା— ହିନ୍ଦୀ ଇଂରେଜୀ ବିବାଦ ଏପରି ସ୍ତରକୁ ଗଲା ଯେ ଅଧିବେଶନ ଚାଲିବା ବଡ଼ କଷ୍ଟ ହୋଇପଡ଼ିଲା । ହଠାତ୍ ଭାଇ ରାମଲୁଭାୟା ଛିଡ଼ାହୋଇ ପଡ଼ି ସମସ୍ତଙ୍କୁ ସମବେତ ସ୍ୱରରେ ଜାତୀୟ ସଙ୍ଗୀତ ଗାଇବାକୁ ନିର୍ଦ୍ଦେଶ ଦେଲେ । ଆରମ୍ଭ ହେଲା 'ଜନ ଗଣ ମନ' । ଅର୍ଦ୍ଧରାତ୍ରୀର ନିରବତାକୁ ଭଙ୍ଗ କରି ଆହ୍ଲାହାବାଦ ସିନେଟ ହଲରେ ପ୍ରତିଧ୍ୱନିତ ହେଲା..... 'ଜୟହେ ଭାରତ ଭାଗ୍ୟବିଧାତା' । ମନେ ହେଲା ଯେପରି ଏ ସଙ୍ଗୀତର ସୁର ଆକାଶରେ କମ୍ପନ ତୋଳୁଛି ଓ ମେଦିନୀରେ ଭୂମିକମ୍ପ ସୃଷ୍ଟି କରୁଛି । ସେ ସଙ୍ଗୀତର ଭାବ ପ୍ରତି ପ୍ରତିନିଧିର ଦେହ ଓ ମନରେ

ଅଗ୍ନି ସଞ୍ଚାର କରୁଛି । ସେଇ ଅଗ୍ନିରୁ ଯେଉଁ ଶକ୍ତି ଜନ୍ମ ନେବ ତା ସମ୍ମୁଖରେ କୌଣସି ଶତ୍ରୁ କେବେ ତିଷ୍ଠି ପାରିବ ନାହିଁ ।

ଠିକ୍ ସେମିତି ଏକ ପରିବେଶ ସୃଷ୍ଟି ହୋଇଥିଲା ଯେତେବେଳେ ଆମେ ସବୁ ମୃତ ଶହୀଦ୍‌ଙ୍କ ସମ୍ମାନାର୍ଥେ ଦୁଇ ମିନିଟ୍ ନୀରବ ପ୍ରାର୍ଥନା କରୁଥିଲୁ । କି ଅପୂର୍ବ ନୀରବତା ! ସମାଧିର ନୀରବତା ଠାରୁ ଆହୁରି ନିବିଡ଼ ! ଗଭୀର ଓ ପବିତ୍ର ଅନୁଭବ ଯେପରି ହୃଦୟର ଅନ୍ତରତମ ପ୍ରଦେଶରୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଦେଉଛି !! ନିଃଶବ୍ଦ ମୁହୂର୍ତ୍ତରେ ମୁଁ ମୋ ନିଶ୍ୱାସର ଶବ୍ଦ ମଧ୍ୟ ଶୁଣିପାରୁଥିଲି ।

ତେବେ ଆମର ଅଭାବ କେଉଁଠି ? ମୋର ଯେତେଦୂର ମନେହୁଏ ଯେ ଆମର ପ୍ରଥମ ଅଭାବ ହେଉଛି ଆମ ଭିତରୁ ଅଧିକାଂଶ ଭାରତ ଚୀନ ବିବାଦ ବିଷୟରେ ଅଜ୍ଞ । ଏ ବିଷୟଟିକୁ ଆମେ ପ୍ରତ୍ୟେକ ଭଲ ଭାବରେ ଅନୁଧ୍ୟାନ କରିବା ଦରକାର । ମ୍ୟାକ୍‌ମୋହନ ଲାଇନ୍ କଣ ? ଚୀନ, ଭାରତ ଓ ତିବ୍ବତ ଚୁକ୍ତିର ବିଷୟବସ୍ତୁ କଣ, ଚୀନ ଆକ୍ରମଣର କାରଣ ଓ ଦୁଇଦେଶର ଦାବୀ ଏ ସବୁ ବିଷୟରେ ଆମର ପୁରା ଜ୍ଞାନ ଥିବା ଦରକାର । ସେଥିପାଇଁ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ଶ୍ୱେତପତ୍ର, ପୁସ୍ତକ, ମାନଚିତ୍ର, ପ୍ରଭୃତି ଆଣି ପ୍ରଥମେ ଅଧ୍ୟୟନ କରିବା ଦରକାର । ତା' ପରେ ଏହି ବିଷୟରେ ଗୋଟିଏ ପରିଷ୍କାର ଚିତ୍ର ଆମେ ମନରେ ରଖି ପାରିବା , ଯାହା ଫଳରେ ଆମେ ଜନସାଧାରଣଙ୍କ ନିକଟରେ ସବୁ ବିଷୟ ଭଲ ଭାବରେ ଉପସ୍ଥାପନ କରିପାରିବା । ସେଥିଲାଗି ପ୍ରତ୍ୟେକ ବିଶ୍ୱବିଦ୍ୟାଳୟରେ Information cells ରହିବା ଦରକାର । ପ୍ରତ୍ୟେକ ଛାତ୍ର ପାଖରେ ଶୃଙ୍ଖଳା, ସଂଯମ, ଦେଶ ସେବା କରିବାପାଇଁ ପ୍ରୟୋଜନୀୟ ଶକ୍ତି ରହିବା ଦରକାର । ଚୀନ ଆକ୍ରମଣ କେବଳ ଏକ ଆହ୍ୱାନ ନୁହେଁ ଏହା ଆମ ପକ୍ଷରେ ନିଜ ଶକ୍ତିର ପରାକାଷ୍ଠା ଦେଖାଇବାର ସୁଯୋଗ । ସବୁ ସ୍ତରରେ ସର୍ବୋଚ୍ଚସ୍ଥାନ ଅଧିକାର କରିବାର ଆଗ୍ରହ ଓ ପ୍ରତିଜ୍ଞା ଆମ ମନରେ ସ୍ଥାନ ପାଇବା ଉଚିତ୍ ।

ଏଠି ଭାଇ ଦୟାଲ ଓ ରାଲ୍‌ହାଟୀଙ୍କ କଥା ଆପେ ଆପେ ମନେ ପଡ଼େ । ଦୁହେଁ ଏଇ ସମ୍ମିଳନୀର ସଫଳତାପାଇଁ କି ଅକ୍ଳାନ୍ତ ପରିଶ୍ରମ କରୁଛନ୍ତି ! କିନ୍ତୁ ଟିକିଏ ଗର୍ବ ନାହିଁ, ଅହଙ୍କାର ନାହିଁ । ଦୁହେଁ ମେଳାପୀ, ଭଦ୍ର ଓ ସହନଶୀଳ ଓ ଯଥେଷ୍ଟ ଧୈର୍ଯ୍ୟ ରହିଛି ଦୁହିଁଙ୍କର । କର୍ତ୍ତବ୍ୟ ପାଳନ କରି ଚାଲିଛନ୍ତି ଦୁହେଁ । ଏଇ କେତେଗୋଟି ଗୁଣ ବର୍ତ୍ତମାନ ପ୍ରତି ଛାତ୍ର ପାଖରେ ଦେଖା ଦେବା ଆବଶ୍ୟକ ।

ଫାଦର ଗିଲ୍ ଗାର୍ଟ ପ୍ରତିନିଧିମାନଙ୍କ ଉପରେ ମନ୍ତବ୍ୟ ଦେଇ କହିଲେ ଯେ ଆମେ ସବୁବେଳେ ଠିକ୍ ବାଟରେ ଚାଲୁ । କେବଳ ନିର୍ବାଚନ ସମୟରେ ଆମ ମୁଣ୍ଡ ବିଗିଡ଼ିଯାଏ ବୋଧହୁଏ । National Students' Defence Committee ନିର୍ବାଚନରେ ଯେଉଁ ସାମାନ୍ୟ ଗଣ୍ଡଗୋଳ ଦେଖାଗଲା ତାକୁଇ ଲକ୍ଷ୍ୟ କରି ଫାଦର ଏ ମନ୍ତବ୍ୟ ଦେଇଥିଲେ ।

ଉତ୍ତର ପ୍ରଦେଶର ମନ୍ତ୍ରୀ ଶ୍ରୀଯୁକ୍ତ ବହୁଗୁଣା ଆଲୋଚନାରେ ଭାଗନେଇ କହିଲେ ଯେ ଇତିହାସରେ ଯେତେଥର ଭାରତ ପରାଜୟ ସ୍ୱୀକାର କରିଛି, ସବୁବେଳେ ଗୋଟିଏ କାରଣରୁ ତାହା ହୋଇଛି — ଆମେ ଆଧୁନିକ ଅସ୍ତ୍ରଶସ୍ତ୍ର ଦ୍ୱାରା କେବେ ଶତ୍ରୁର ସମ୍ମୁଖୀନ ହେଉନା । ପୁରୁଙ୍କ ପରାଜୟ ବା ବାବରଙ୍କ ବିଜୟର ଉଦାହରଣ ଦେଇ ସେ ଏକଥା କହିଥିଲେ । ସବୁ ଥାଇ ମଧ ଆମେ ଯଦି ଆଧୁନିକ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ନ ହେବା ତେବେ ଅନ୍ୟ ଗୁଡ଼ିକର କୌଣସି ଅର୍ଥ ରହିବନାହିଁ ।

ପାର୍ଲ୍ୟାମେଣ୍ଟ ସଭ୍ୟ ରବିବର୍ମା ଆମର ପ୍ରଚାର ବିଭାଗ କିପରି ପଛରେ ପଡ଼ିଛି ତାର ବହୁ ଉଦାହରଣ ଦେଇ ବୁଝାଇଥିଲେ । ଯୁଦ୍ଧବେଳେ ଭଲ ପ୍ରଚାରର ଆବଶ୍ୟକତା ସବୁଠାରୁ ବେଶୀ ।

× × × ×

ଭାରତ-ଚୀନର ୨୨୦୦ ମାଇଲର ସୀମା ଚୁକ୍ତି ଅଥବା ପରମ୍ପରା ଦ୍ୱାରା ସ୍ୱୀକୃତ । ପୂର୍ବାଞ୍ଚଳର ସୀମା ଏକ ତ୍ରୀଦଳୟ ସମ୍ମିଳନୀରେ ନିର୍ଦ୍ଧାରିତ ହୋଇଥିଲା ୧୯୧୩-୧୪ ମସିହା ସିମଲା ସମ୍ମିଳନୀରେ । ଏହି ଭାରତ-ତିବ୍ବତ- ଚୀନ ସମ୍ମିଳନୀରେ ଏକ ମାନଚିତ୍ର ପ୍ରସ୍ତୁତ ହୋଇଥିଲା ଯେଉଁଥିରେ କି ଚୀନର ପ୍ରତିନିଧି ତାଙ୍କର ସ୍ୱାକ୍ଷର ପ୍ରଦାନ କରିଥିଲେ । ଆଲୋଚନା ସମୟରେ ଚୀନ୍ ପ୍ରତିନିଧି କୌଣସି ଆପତ୍ତି ନ ଉଠାଇଥିଲେ ମଧ ଚୁକ୍ତି ସ୍ୱାକ୍ଷରିତ ସ୍ଥଳରେ ଭିତର ବାହାର ତିବ୍ବତ ସୀମା ଉପରେ ବିବାଦ ଉପୁଜୁଥିବାରୁ ସେ ଚୁକ୍ତିରେ ସ୍ୱାକ୍ଷର କରିନଥିଲେ । କିନ୍ତୁ ତିବ୍ବତର ପ୍ରତିନିଧି ଲୋଞ୍ଚେନ ସାତ୍ରା ରାଜଧାନୀ ଲାସାରୁ ସ୍ପଷ୍ଟ ନିର୍ଦ୍ଦେଶ ପାଇଥିଲେ ଯେ ସମ୍ମିଳନୀରେ ପ୍ରସ୍ତୁତ ମାନଚିତ୍ରକୁ ଭାରତ ଓ ତିବ୍ବତର ସୀମା ରୂପେ ଗ୍ରହଣ କରିବାପାଇଁ । ସେତେବେଳେ ତିବ୍ବତ ଏକ ସଂପୂର୍ଣ୍ଣ ସ୍ୱାଧୀନ ଦେଶ ।

ଭୁଟାନର ପୂର୍ବରେ ମ୍ୟାକ୍ ମୋହନ ରେଖା । ସେ ଅଞ୍ଚଳରେ ଏହା ପ୍ରାକୃତିକ, ପାରମ୍ପରିକ ଓ ଶାସନଗତ ଜଳବିଭାଜକ ସୀମାରେଖା ଅଟେ । ପଶ୍ଚିମରେ ସୀମାରେଖା ୧୮୪୨ ମସିହାରେ କାଶ୍ମୀରର ପ୍ରତିନିଧି, ଦଲାଇଲାମା ଓ ଚୀନର ସମ୍ରାଟଙ୍କ ମଧରେ ସ୍ୱୀକୃତ ହୋଇଥିଲା । ସେ ସମୟରୁ ଲାଡ଼ାଖ ପ୍ରଭୃତି ଅଞ୍ଚଳ ଭାରତୀୟ ମାନଚିତ୍ରରେ ସ୍ଥାନ ପାଇଆସିଥିଲା । ଏପରିକି ୧୮୯୩, ୧୯୧୭, ୧୯୧୯ ରେ ଚିନରେ ପ୍ରକାଶିତ ହୋଇଥିବା ମାନଚିତ୍ର ଗୁଡ଼ିକରେ ମଧ ଏହି ଅଞ୍ଚଳ ଭାରତୀୟ ସୀମା ଭିତରେ ଦର୍ଶା ଯାଇଥିଲା ।

ନଭେମ୍ବର ତା ୨୦, ୧୯୫୦ରେ ଯେତେବେଳେ ପ୍ରଧାନମନ୍ତ୍ରୀ ନେହେରୁ ମ୍ୟାକ୍‌ମୋହନ ସୀମାରେଖାକୁ ଆମର ଚୀନ ସହିତ ସୀମା ବୋଲି ଲୋକସଭାରେ ଘୋଷଣା କଲେ ସେତେବେଳେ ଚୀନ ପକ୍ଷରୁ କୌଣସି ପ୍ରତିବାଦ ହୋଇ ନ ଥିଲା । ୧୯୫୪ରେ ତିବ୍ବତ ଉପରେ ଚୀନ୍ ଭାରତ ସମ୍ମିଳନୀରେ ଏ ପ୍ରଶ୍ନ ଉପସ୍ଥାପନ କରି ହୋଇଥାଆନ୍ତା । କିନ୍ତୁ ଚତୁର ଚୀନ ସରକାର ତାହା କଲେ ନାହିଁ । ୧୯୫୪ ଅକ୍ଟୋବରରେ ନେହେରୁଙ୍କ ଚୀନ ଭ୍ରମଣବେଳେ

ମଧ୍ୟ ଏହି ସୀମାରେଖା ଉପରେ ଚୀନ ନୀରବ ରହିଥିଲା । କେତେକ ଚୀନ୍ ମାନଚିତ୍ରରେ ଭାରତୀୟ ଅଞ୍ଚଳ ଦର୍ଶା ହୋଇଥିବାରୁ ଆମର ପ୍ରଧାନମନ୍ତ୍ରୀ ଚୀନ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଏହାର ଉତ୍ତରରେ ଚୀନ ସରକାର କହିଲେ ଯେ ସେ ମାନଚିତ୍ର ଗୁଡ଼ିକ ସାମ୍ରାଜ୍ୟବାଦୀ କୋମିଙ୍ଗଟାଙ୍ଗଙ୍କ ରାଜତ୍ୱରେ ପ୍ରସ୍ତୁତ ହୋଇଥିଲା । ପରେ ଆମେ ସେସବୁ ଭୁଲ୍ ସୁଧାରି ନେବୁ । ୧୯୫୬ରେ ଚୀନ ପ୍ରଧାନମନ୍ତ୍ରୀଙ୍କ ଭାରତ ଭ୍ରମଣବେଳେ ମଧ୍ୟ ମ୍ୟାକମୋହନ ସୀମାକୁ ଚାଉ-ଏନ୍-ଲାଇ ସମ୍ମତି ଦେଇଥିଲେ । ୧୯୫୯ରେ ସୀମା ବିବାଦର ସମାଧାନ ପାଇଁ ଯେଉଁ ସାକ୍ଷାତ ହୋଇଥିଲା ସେଥିରେ ଭାରତ ପକ୍ଷରେ ବେଶୀ ଯୁକ୍ତି ଥିବାର ଦେଖାଗଲା । ସତ୍ୟର ଆଲୋକକୁ ମିଥ୍ୟାର ଅନ୍ଧକାର ହ୍ରଦରେ ବୁଡ଼ାଇ ଦେବାପାଇଁ ଚୀନ ସରକାର ୧୯୫୯ ମସିହାରୁ ଆକ୍ରମଣ କରି ଆସିଛନ୍ତି । ଧୀରେ ଧୀରେ ଭାରତୀୟ ଅଞ୍ଚଳ ଦଖଲ କରିଛନ୍ତି । ଭାରତ ଶାନ୍ତିପୂର୍ଣ୍ଣ ସମାଧାନର ଆଶାରେ ଏ ପର୍ଯ୍ୟନ୍ତ ନୀରବ ରହି ଆସିଛି । ଅକ୍ଟୋବର ୨୦, ୧୯୬୨ର ଆକ୍ରମଣ ଫଳରେ ବାସ୍ତବତାର କୁଠାରାଘାତରେ ଭାରତର ନିଦ୍ରା ଭାଙ୍ଗି ଯାଇଛି । ନୀରବତା ଧ୍ୱଂସ ହୋଇଛି । ଚୀନର ସବୁ କଥା ଛଳନାପୂର୍ଣ୍ଣ ବୋଲି ବିଶ୍ୱାସ ହୋଇଛି ।

ଏପରିକି ଚୀନର ଏକତରଫା ଯୁଦ୍ଧ ବିରତି ଘୋଷଣା ମଧ୍ୟ ଏକ ଚାଲବାଜି । ନଭେମ୍ବର ୧୯୫୯ର ପ୍ରକୃତ ନିୟନ୍ତ୍ରଣ ଅଞ୍ଚଳ ଏକ ସୀମାରେଖା ନୁହେଁ । ଏହା କେବଳ ବହୁ ଘାଟୀର ନିୟନ୍ତ୍ରଣ ଯାହା ୧୯୫୭ ମସୀହାରୁ ଚୀନ ଅଧିକାର କରି ଆସିଛି । ସେ ସମୟରେ ଚୀନର ଘାଟୀ ସବୁ ସ୍ପାଙ୍ଗୁର, ଖୁରନାକ୍ ଫୋର୍ଟ, କୋଙ୍ଗକାଲା ଓ ଅକ୍‌ଶାଇ ଚୀନ ରୋଡ଼ ଇତ୍ୟାଦିରେ ଥିଲା । ଏହି ତିନିବର୍ଷ ଭିତରେ ସେ ଘାଟୀର ସୀମା ଦୌଲତ୍‌ବେଗ୍ ଓଲଡ଼ି ଓ ଚୀପ୍ ଚାପ୍ ଉପତ୍ୟକତାକୁ ଟପିଛି । ଏହିସବୁ ଅଞ୍ଚଳରେ ନିଜର ସ୍ଥାନ ଦୃଢ଼ ରଖିବା ପାଇଁ ଚୀନ ସରକାରଙ୍କର ଏ ପ୍ରସ୍ତାବ । କେବଳ ସେତିକି ନୁହେଁ ୧୯୫୯ ନଭେମ୍ବର ପ୍ରସ୍ତାବ ଫଳରେ ଆହୁରି ଭାରତୀୟ ଅଞ୍ଚଳ ମଧ୍ୟ ଚୀନ ଦାବୀ କରୁଛି । କୋଡ଼ିଏ କିଲୋମିଟର ଘୁଞ୍ଚିଯିବା ଫଳରେ ଚୀନ କେବଳ କିଛି ଭାରତୀୟ ଅଞ୍ଚଳରୁ ଘୁଞ୍ଚିଯିବ । ଅଥଚ ଭାରତକୁ ବହୁ ପ୍ରଧାନ ସାମରିକ ଘାଟୀରୁ ଅପସରି ଯିବାକୁ ପଡ଼ିବ । ଏହା ଫଳରେ ଚୀନ ଭାରତୀୟ ଅଞ୍ଚଳର ୧୦୦ କିଲୋମିଟର ଭିତରେ ନିଜର ଆସ୍ଥାନ ଜମାଇ ଥିଲାବେଳେ ଭାରତ ସାମରିକ ଦୃଷ୍ଟିକୋଣରୁ ସବୁବେଳେ ବିପଦ ଆଶଙ୍କା କରୁଥିବ । ପୂର୍ବ ଓ ମଧ୍ୟଭାଗରେ ମଧ୍ୟ ଏହା ଫଳରେ ଭାରତର ପ୍ରତିରକ୍ଷା ଦୁର୍ବଳ ହୋଇ ପଡ଼ିବ ।

ଏହି ଯୁଦ୍ଧ ବିରତି ପ୍ରସ୍ତାବ ଫଳରେ ଚୀନ ଭାରତୀୟ ଅଞ୍ଚଳ ଦଖଲର ସ୍ୱୀକୃତି ସଙ୍ଗେ ସଙ୍ଗେ ଆଲୋଚନା ଦ୍ୱାରା ବିବାଦର ସମାଧାନ ଚାହେଁ । ବିଶ୍ୱମତ ନିଜ ପକ୍ଷରେ ସୃଷ୍ଟି କରିବା ପାଇଁ ଏ ଏକ ଧୂଆଁବାଣ । ଭାରତ କିପରି ଚୀନ ଶକ୍ତି ନିକଟରେ ସମର୍ପଣ କରୁ ଏହାହିଁ ଚୀନର ମତଲବ । ଫଳରେ ଏସିଆରେ ଭାରତର ସମ୍ମାନ ହ୍ରାସ ପାଇବ ।

କୌଣସି ଆତ୍ମସମ୍ମାନୀ ଦେଶ ପକ୍ଷରେ ଏପରି ପ୍ରସ୍ତାବ ଗ୍ରହଣ କରିବା କଳ୍ପନାତୀତ ।

ଏସବୁ ବିଷୟ ଅନୁମାନ କରିବା ପରେ ଆମର କର୍ତ୍ତବ୍ୟ ନିରୂପଣ କରିବା ଦରକାର । ଯେଉଁମାନେ ଭାବୁଛନ୍ତି ଏହି ଯୁଦ୍ଧରୁ କିଛି ଲାଭ କରିନେବେ ସେମାନେ ମନେ ରଖନ୍ତୁ ଯେ ଚୀନ କମ୍ୟୁନିଷ୍ଟ ସରକାର ଆଗମନରେ ସେମାନଙ୍କୁ ହିଁ ପ୍ରଥମେ ଗୁଳି କରି ମାରି ଦିଆଯିବ ।

ଯେଉଁମାନେ ଦେଶଦ୍ରୋହୀ କାର୍ଯ୍ୟ କରି ଚୀନ ଆକ୍ରମଣକୁ ସ୍ୱାଗତ କରୁଛନ୍ତି ସେମାନଙ୍କର ପରିଣତି ମଧ୍ୟ ସେଇଆ ହେବ । ଯାହାର ଆନୁଗତ୍ୟରେ ସନ୍ଦେହ ପ୍ରକାଶ ପାଏ ତାକୁ କୌଣସି ସରକାର କେବେ ବରଦାସ୍ତ କରେ ନାହିଁ ।

ଜାତୀୟ ପ୍ରତିରକ୍ଷା ପାଣ୍ଠିରେ ଦେଖାଯାଉଛି ଯେ ଯେଉଁମାନେ ଧନୀ ସେମାନେ ପାଣ୍ଠିକୁ ଅନୁପାତରେ କମ ଦାନ କରୁଛନ୍ତି । ଏହା ସ୍ପୃହଣୀୟ ନୁହେଁ । ସାମରିକ ବାହିନୀରେ ପ୍ରତ୍ୟେକ ସକ୍ଷମ ଯୁବକ ଯୋଗ ଦେବା ଦରକାର । ନିଜର ସ୍ୱାଧୀନତା, ସ୍ୱାତନ୍ତ୍ର୍ୟତାକୁ, ଉପଭୋଗ କରିବା ପାଇଁ କିଛି ତ୍ୟାଗ ଆବଶ୍ୟକ । ମାତୃଭୂମିର ରକ୍ଷାଠାରୁ ଆଉ ବେଶୀ କିଛି ତ୍ୟାଗ ନାହିଁ ।

ସମ୍ମିଳନୀର ସ୍ଲୋଗାନ୍ ତ ଆପଣଙ୍କ ପାଖେ ପହଞ୍ଚିବ । ଏ ସ୍ଲୋଗାନ୍‌ର ବେଳ ନୁହେଁ । ଏ ସ୍ଲୋଗାନ୍ ଆପଣଙ୍କ କାର୍ଯ୍ୟକ୍ରମ ପାଇଁ ।

କାମ-କାମ ଆଉ କାମ । ବକ୍ତୃତା ବହୁଳ ଜୀବନଠାରୁ ପୃଥକ ବର୍ତ୍ତମାନର କର୍ମମୟ ଜୀବନ । ଏକ ବିରାଟ ପରୀକ୍ଷା ଏ ଜାତି ପକ୍ଷରେ । କାଶ୍ମୀରରୁ କୁମାରୀକା ପର୍ଯ୍ୟନ୍ତ ଏ ସମ୍ମିଳନୀର ବାର୍ତ୍ତା ପହଞ୍ଚିବ; ତା ପରଠାରୁ ଆପଣଙ୍କର କର୍ତ୍ତବ୍ୟ ।

ରାତି ବହୁତ ବେଶୀ ହେଲାଣି । ପରେ ସୁବିଧା ହେଲେ ଆହୁରି ଆଲୋଚନା କରିବି । ବେଶୀ ଆପଣଙ୍କ ସଙ୍ଗେ ଦେଖା ହେଲେ । ସମାବର୍ତ୍ତନ ଉତ୍ସବରେ ଅଭିନନ୍ଦନ ଓ କର୍ତ୍ତବ୍ୟର ଆହ୍ୱାନ ସହ .......

ପ୍ରବନ୍ଧଟି ୧୯୬୨ ମସିହା, ଚୀନ ଆକ୍ରମଣ ପରେ ଲେଖା ହୋଇଥିଲା । National Students' Defence Committeeରେ ସଦସ୍ୟ ହିସାବରେ । ଲେଖକଙ୍କର ଅଭିମତ ବର୍ତ୍ତମାନ ଚୀନର ଅରୁଣାଚଳ ଓ ତିବ୍ବତ ଉପରେ ଦାବୀ ଓ ବର୍ଦ୍ଧିତ ରକ୍ଷା ବଜେଟ୍ ପୃଷ୍ଠଭୂମିରେ ପ୍ରାସଙ୍ଗିକତା ରହିଛି ।

***

# କ୍ଷୁଧା ଓ ଖାଦ୍ୟ

କିଛିଦିନ ହେବ ଖାଦ୍ୟଜନିତ ହିଂସା, ଅଶାନ୍ତି ଓ ଅସ୍ଥିରତାର ବାତାବରଣ ପୃଥିବୀର ବହୁ ପ୍ରାନ୍ତରେ ଦେଖାଯାଇଛି । ଥାଇଲାଣ୍ଡ, ଇଣ୍ଡୋନେସିଆ, ହାଇତି, କାମେରୁନ୍, ଆଫଗାନିସ୍ଥାନ, ଇଜିପ୍ଟ, ଇଥିଓପିଆ, ୟେମେନ୍, ଉଜ୍‌ବେକିସ୍ତାନ ପ୍ରଭୃତି ଦେଶଗୁଡ଼ିକରେ ଦଙ୍ଗା ହଙ୍ଗାମା ଏବଂ ରାଜନୈତିକ ଅସ୍ଥିରତା ବର୍ତ୍ତମାନ ଦୃଶ୍ୟମାନ । ହାଇତିର ପ୍ରଧାନମନ୍ତ୍ରୀ କ୍ଷମତାଚ୍ୟୁତ ହେବା, ଇଜିପ୍ଟରେ ସୁରକ୍ଷାବାହିନୀକୁ ରୁଟି ପ୍ରସ୍ତୁତ କରିବାରେ ପ୍ରୟୋଗ କରିବା, ଫିଲିପାଇନ୍ସରେ ରାସନକାର୍ଡ଼ ଭଳି ଚାଉଳ କାର୍ଡ଼ ବିତରଣ ଏକ ଆସନ୍ନ ଝଡ଼ର ସୂଚନା ଦିଏ ।

ବିଶ୍ୱବ୍ୟାଙ୍କ ରିପୋର୍ଟ ଅନୁସାରେ ଗତ ତିନିବର୍ଷ ଭିତରେ ପୃଥିବୀର ଖାଦ୍ୟଶସ୍ୟ ମୂଲ୍ୟରେ ହାରାହାରି ୮୩ ପ୍ରତିଶତ ବୃଦ୍ଧି ହୋଇଛି । ଚାଉଳ (ଯାହାକି ପୃଥିବୀର ଅର୍ଦ୍ଧାଧିକ ଲୋକଙ୍କର ମୁଖ୍ୟ ଖାଦ୍ୟ) ର ଅତ୍ୟଧିକ ମୂଲ୍ୟବୃଦ୍ଧି ହେତୁ ବହୁ ଦେଶ ଏହାର ରପ୍ତାନି ଉପରେ କଟକଣା ଲାଗୁକଲେଣି । ଥାଇଲାଣ୍ଡରେ ଖାଦ୍ୟଶସ୍ୟ କ୍ରୟର ପରିମାଣ ଉପରେ ଅଙ୍କୁଶ ଲାଗିଲାଣି । ଏ ବର୍ଷ ଇଣ୍ଡୋନେସିଆ ବଜେଟ୍‌ରେ ଖାଦ୍ୟ ସବ୍‌ସିଡ଼ି ପାଇଁ ୨୮୦ ମିଲିୟନ ଡ଼ଲାରର ବ୍ୟବଧାନ କରାହୋଇଛି । ସମସ୍ୟାର ଗମ୍ଭୀରତା ଉପଲବ୍ଧି କରି ଆମେରିକା ଜରୁରୀକାଳୀନ ଭିତ୍ତିରେ ଆଫ୍ରିକା ଓ ଏସିଆରେ ଦେଖାଯାଇଥିବା ସମସ୍ୟାର ସମାଧାନ ପାଇଁ ୨୦୦ ମିଲିୟନ ଡଲାର ଅର୍ଥ ମଞ୍ଜୁର କରିଛି ।

ସବୁଜ ବିପ୍ଳବର ପ୍ରାଣଦାତା ନରମାନ୍ ବୋରଲାଗ ଏବେ ଚେତାବନୀ ଦେଇଛନ୍ତି ଯେ ପଚାଶ ଓ ଷାଠିଏ ଦଶକ ଭଳି କୀଟାଣୁନାଶକ, ପ୍ରତିରୋଧକାରୀ, ଅଧିକ ଉତ୍ପାଦନକାରୀ ନୂତନ ଗହମ ବିହନର ଆବିଷ୍କାର, ପ୍ରୟୋଗ, ପ୍ରଚାର ଓ ପ୍ରସାର ନହେଲେ ପୃଥିବୀ ବ୍ୟାପୀ ଗହମର ଅଭାବ ଏବଂ ଖାଦ୍ୟାଭାବର ଭୟଙ୍କର ପରିସ୍ଥିତି ସୃଷ୍ଟି ହେବ । ଉଗାଣ୍ଡାରେ ଆରମ୍ଭ ହୋଇଥିବା ଗହମ ନଷ୍ଟ କରୁଥିବା ରୋଗ ପୃଥିବୀର ଅନ୍ୟ ଅଞ୍ଚଳକୁ ବ୍ୟାପି ଗହମ ଫସଲକୁ ସମ୍ପୂର୍ଣ୍ଣ ବିନାଶ କରିବାର ଆଶଙ୍କାକୁ ପ୍ରାଧାନ୍ୟ ଦେଇ ଆନ୍ତର୍ଜାତୀୟ ସ୍ତରରେ ସହଯୋଗ, ସାହାଯ୍ୟ ଏବଂ ଯୁଦ୍ଧକାଳୀନ ଭିତ୍ତିରେ ଗବେଷଣା ପାଇଁ ବିକଶିତ ଦେଶଗୁଡ଼ିକର ନେତୃତ୍ୱକୁ ସେ ଅନୁରୋଧ କରିଛନ୍ତି ।

ଏଭଳି ପରିସ୍ଥିତି ସୃଷ୍ଟି ହେବାର ବହୁ କାରଣ ରହିଛି । ତନ୍ମଧ୍ୟରୁ ପୃଥିବୀ ଉଷ୍ମତାର ବୃଦ୍ଧି ଏବଂ ଧନୀ ରାଷ୍ଟ୍ରଗୁଡ଼ିକର ପେଟ୍ରୋଲ ବଦଳରେ ଖାଦ୍ୟଶସ୍ୟ ଭିତ୍ତିକ ଇଥାନୋଲ୍ ପ୍ରସ୍ତୁତି ମୁଖ୍ୟତଃ ଦାୟୀ ବୋଲି ବିଶେଷଜ୍ଞମାନଙ୍କ ମତ । ଏହାଛଡ଼ା ଖରାପ ମୌସୁମୀ, ପେଟ୍ରୋଲର ଦରବୃଦ୍ଧି, ଭାରତ ଓ ଚୀନ ଭଳି ବିକାଶଶୀଳ ଦେଶଗୁଡ଼ିକରେ ସୁଷମ ଖାଦ୍ୟର ଚାହିଦା ମଧ୍ୟ ସମସ୍ୟାକୁ ଆହୁରି ଜଟିଳ କରୁଛି । ୟୁନେସ୍କୋ ଏକ ଅନୁଧ୍ୟାନ ପରେ ମତପ୍ରକାଶ କରିଛି ଯେ କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟା , ଜଳବାୟୁ ପରିବର୍ତ୍ତନ, ପରିବେଶ ଅବକ୍ଷୟର ମୁକାବିଲା କରିବାକୁ ପଡ଼ିଲେ ରାଷ୍ଟ୍ରମାନଙ୍କୁ କୃଷିନୀତିରେ ବହୁ ପରିବର୍ତ୍ତନ ଆଣିବାକୁ ପଡ଼ିବ । ଆଧୁନିକ ଟେକ୍ନୋଲୋଜି ଓ ବିଜ୍ଞାନ ଖାଦ୍ୟ ଉତ୍ପାଦନ ବୃଦ୍ଧିରେ ସାହାଯ୍ୟ କରିଥିଲେ ମଧ୍ୟ ତା'ର ସୁଫଳ କ୍ଷୁଦ୍ରଚାଷୀ, ମଜଦୁର, ଗରିବ ଶ୍ରେଣୀର ଲୋକ ଓ ଗ୍ରାମାଞ୍ଚଳରେ ଏପର୍ଯ୍ୟନ୍ତ ପହଞ୍ଚି ପାରିନାହିଁ ।

ସାମ୍ପ୍ରତିକ ଖାଦ୍ୟ ଦୃଶ୍ୟପଟରେ ପେଟ୍ରୋଲର ଭୂମିକାକୁ ମଧ୍ୟ ଉପେକ୍ଷା କରିହେବ ନାହିଁ । ବିଶେଷଜ୍ଞଙ୍କ ଆକଳନ ଅନୁସାରେ ୨୦୫୦ ସୁଦ୍ଧା ପୃଥିବୀର ଜନସଂଖ୍ୟା ୫୦ ପ୍ରତିଶତ ବୃଦ୍ଧି ପାଇ ୯ ବିଲିୟନ୍‌ରେ ପହଞ୍ଚିବ । ଆସନ୍ତା ୩୦ ବର୍ଷରେ କାର, ଟ୍ରକ୍ ପ୍ରଭୃତି ଯାନବାହନର ସଂଖ୍ୟା ଦ୍ୱିଗୁଣିତ ହୋଇ ୨ ବିଲିୟନ୍‌ରେ ପହଞ୍ଚିବ । ଆକାଶ ମାର୍ଗରେ ୩୬ ହଜାର ଜେଟ୍‌ଲାଇନ୍ ଗମନାଗମନ କରିବାର ସମ୍ଭାବନା ରହିଛି । ଏସବୁ ପାଇଁ ପେଟ୍ରୋଲ୍‌ର ଚାହିଦା ୨୦୩୦ ବେଳକୁ ୩୫ ପ୍ରତିଶତ ବୃଦ୍ଧି ପାଇବ । ଆଗାମୀ ଦୁଇଦଶନ୍ଧିରେ ଯଦିଓ ପୃଥିବୀର ସାମୂହିକ ଶକ୍ତି, ଯଥା : ପେଟ୍ରୋଲ, କୋଇଲା, ଗ୍ୟାସ୍, ଅଣୁଶକ୍ତି, ସୌରବିକିରଣ ଇତ୍ୟାଦିର ଚାହିଦା ୬୫ ପ୍ରତିଶତ ବୃଦ୍ଧି ପାଇବାର କଳ୍ପନା କରାଯାଇଛି, କିନ୍ତୁ ପେଟ୍ରୋଲର ପ୍ରାଧାନ୍ୟ ଓ ଆବଶ୍ୟକତା ବଳବତ୍ତର ରହିବ ଏବଂ ଏହା ପ୍ରଗତିର ମୁଖ୍ୟ ଶକ୍ତିଦାୟକ ଉତ୍ସ ରହିବ । ଭାରତ ଓ ଚୀନ୍‌ର ବିକାଶ ଯାତ୍ରା ଏବଂ ଦୁଇଦେଶର ନାଗରିକଙ୍କର କ୍ରମବର୍ଦ୍ଧିଷ୍ଣୁ ଆଶା ଓ ଆକାଂକ୍ଷା ପରିସ୍ଥିତିକୁ ଆହୁରି ଜଟିଳ କରିବ ଆଗାମୀ ଦିନରେ ।

ଏହି ପରିପ୍ରେକ୍ଷୀରେ ପେଟ୍ରୋଲ ଆମଦାନୀ ପାଇଁ ସମ୍ପୂର୍ଣ୍ଣଭାବେ ବିଦେଶୀ ରାଷ୍ଟ୍ରଗୁଡ଼ିକ ଉପରେ ନିର୍ଭରଶୀଳ ନୀତିରୁ ଓହରି ଆମେରିକାରେ ୨୦ ପ୍ରତିଶତ ଖାଦ୍ୟଶସ୍ୟ ବର୍ତ୍ତମାନ ଇଥାନୋଲ୍ ପ୍ରସ୍ତୁତିରେ ପ୍ରୟୋଗ ହେଉଛି । ଆମେରିକାର କୃଷକମାନେ ଅନ୍ୟ କୃଷିଦ୍ରବ୍ୟ ପରିବର୍ତ୍ତେ ମକାଚାଷ ପ୍ରତି ଆଗ୍ରହ ପ୍ରକାଶ କରିବା ଫଳରେ ଅନ୍ୟ କୃଷିଜାତଦ୍ରବ୍ୟ ଉତ୍ପାଦନ ବାଧାପ୍ରାପ୍ତ ହେବା ଯୋଗୁଁ ଏହାର ବିଶ୍ୱବଜାର ଉପରେ ପ୍ରଭାବ ପଡୁଛି । ସେହିଭଳି ଇୟୁରୋପିଆନ୍ ୟୁନିଅନ୍ ୨୦୨୦ ସୁଦ୍ଧା ଯାନବାହନ ପ୍ରୟୋଜନର ୧୦ ପ୍ରତିଶତ ଖାଦ୍ୟଶସ୍ୟଭିତ୍ତିକ ଶକ୍ତି ଉପଯୋଗ ଉପରେ ନୀତି ପ୍ରଣୟନ କରିଛନ୍ତି । ଏପରି ନୀତିର ସମୀକ୍ଷା ଓ ମୂଲ୍ୟାଙ୍କନ କରି ପରିବର୍ତ୍ତନ ପାଇଁ ବହୁ ଗୋଷ୍ଠୀ ଆମେରିକା ଓ ୟୁରୋପୀୟ ସରକାରଗୁଡ଼ିକ ଉପରେ ଚାପ ପକାଇବା ଆରମ୍ଭ କଲେଣି । ୟୁରୋପ ପରିବେଶ ଉପଦେଷ୍ଟା

କମିଟିର ମତରେ ଏପରି ନୀତିର କୁପ୍ରଭାବ ବର୍ତ୍ତମାନ ଦେଖାଯାଇଥିବା ଖାଦ୍ୟଶସ୍ୟ ଦରବୃଦ୍ଧି ଏବଂ ଦକ୍ଷିଣପୂର୍ବ ଏସିଆରେ କ୍ଷିପ୍ର ଗତିରେ ଜଙ୍ଗଲ ହ୍ରାସରେ ପ୍ରତିଫଳିତ । ଅଳ୍ପ କେତେକ ବିଶେଷଜ୍ଞଙ୍କ ମତରେ ଏଭଳି ସମୀକ୍ଷା ଭ୍ରମାତ୍ମକ, କାରଣ ବର୍ତ୍ତମାନର ପରିସ୍ଥିତି ଚାଉଳ ଓ ଗହମର ଅଭାବ ଯୋଗୁଁ ଏବଂ ଏ ଦୁଇଟି ଖାଦ୍ୟଶସ୍ୟ ଇଥାନୋଲ୍ ପ୍ରଭୃତିରେ ଉପଯୋଗ ହୁଏନାହିଁ । ଏହାର ଅସଲ କାରଣ ହେଉଛି ଅଷ୍ଟ୍ରେଲିଆ ପ୍ରଭୃତି ଦେଶରେ କ୍ରମାଗତ ମରୁଡ଼ି ଏବଂ ବିଶ୍ୱବ୍ୟାପୀ ସୁଷମ ଖାଦ୍ୟର କ୍ରମବର୍ଦ୍ଧିଷ୍ଣୁ ଚାହିଦା । ଏହି ଗୋଳମାଳିଆ ପରିସ୍ଥିତିରେ ୟୁରୋପ ଓ ଆମେରିକାରେ ଜି.ଏମ୍. (ଜେନେଟିକାଲି ମଡ଼ିଫାଏଡ଼) ବିହନର ଉପଯୋଗ ସପକ୍ଷରେ ମତପ୍ରକାଶ ପାଇଲାଣି । ଜି,ଏମ୍ ଗ୍ରହଣ କରିବାରେ ଯେଉଁ ବିରୋଧ ଥିଲା, ସେଥିରେ କିଛିଟା ପରିବର୍ତ୍ତନର ଆଭାସ ମିଳୁଛି । ଫସଲ ଉତ୍ପାଦନ ପାଇଁ କମ୍ ପାଣି ଓ ଉର୍ବରକ ଦରକାର କରୁଥିବା ବିହନ ପାଇଁ ମଧ୍ୟ ଗବେଷଣା ଓ ପ୍ରଚେଷ୍ଟା ଚାଲିଲାଣି ।

ବିଭିନ୍ନ ଦେଶରେ ଘଟୁଥିବା ଘଟଣାଗୁଡ଼ିକର ଇଙ୍ଗିତ ହେଉଛି ଯେ, କ୍ଷୁଧା, ଅନାହାର ବର୍ତ୍ତମାନ ଦରିଦ୍ରଙ୍କ ଭିତରେ ସୀମିତ ନୁହେଁ । ଏହା ଦରିଦ୍ରଙ୍କ ବ୍ୟତୀତ ଶ୍ରମିକ ଓ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକଙ୍କୁ ଗ୍ରାସ କଲାଣି । ଏ ସମସ୍ୟାର ସମାଧାନ ପାଇଁ କିଛି ମ୍ୟାଜିକ୍ ବା କାଉଁରୀ କାଠି ନାହିଁ । ଏହି ପୃଷ୍ଠଭୂମିରେ କୃଷିର ଅବହେଳା ମାନବ ଅଧିକାରର ଉଲଂଘନ ବୋଲି ମନେହୁଏ । କେନ୍ଦ୍ର କୃଷିମନ୍ତ୍ରୀ ଶରତ ପଓ୍ୱାର ଦେଶବାସୀଙ୍କୁ ଆଶ୍ୱାସନା ଦେଇଛନ୍ତି ଯେ ଖାଦ୍ୟଜନିତ ବିଶ୍ୱ ପରିସ୍ଥିତିର ପ୍ରଭାବ ଭାରତ ଉପରେ ପଡ଼ିବ ନାହିଁ । ତାଙ୍କ କହିବା ଅନୁଯାୟୀ ବର୍ତ୍ତମାନ ୫ ମିଲିୟନ ଟନ୍ ଖାଦ୍ୟଶସ୍ୟ ଦେଶରେ ମହଜୁଦ ଅଛି ଯାହା କୌଣସି ଆସନ୍ନ ବିପଦର ସମ୍ମୁଖୀନ ହେବା ପାଇଁ ଯଥେଷ୍ଟ । କଥା ହେଉଛି ଏଭଳି ଖାଦ୍ୟାଭାବର ପୁନରଗମନର ସମ୍ଭାବନାକୁ ଅସ୍ୱୀକାର କରିହେବ ନାହିଁ । ଜଳବାୟୁରେ ପରିବର୍ତ୍ତନ, ବିକଶିତ ଦେଶଗୁଡ଼ିକର କୃଷି ଓ ଶକ୍ତି ନୀତି ଖାଦ୍ୟାଭାବର ସହାୟକ ରୂପେ କାର୍ଯ୍ୟ କରୁଛି । ଉପା ସରକାରର କୃଷି କ୍ଷେତ୍ରରେ ନୈରାଶ୍ୟଜନକ ପ୍ରଦର୍ଶନ ପରେ ଏ ବର୍ଷର ବଜେଟ୍ ଜରିଆରେ କିଛିଟା ସୁଧାର ଆଣିବାର ପ୍ରୟାସ କରିଛନ୍ତି । ମନେହେଉଛି ଏସବୁ ୨୦୦୯ ନିର୍ବାଚନକୁ ଆଖି ଆଗରେ ରଖି କରାହୋଇଛି । କିଛି କୃଷକଙ୍କୁ ଋଣମୁକ୍ତ କରିବା ଲୋକପ୍ରିୟ ପଦକ୍ଷେପ ହୋଇପାରେ, କିନ୍ତୁ ସ୍ଥାୟୀ ସମାଧାନ ନୁହେଁ । ଏଥିରେ କୌଣସି ଦୀର୍ଘସ୍ଥାୟୀ ଦିଗ୍‌ଦର୍ଶନ ନାହିଁ । ଶରତ ପଓ୍ୱାର ଜଣେ କୃଷକ ନେତା ଓ କୃଷି ସମବାୟ ଆନ୍ଦୋଳନରୁ ତାଙ୍କର ରାଜନୈତିକ ଅଭ୍ୟୁଦୟ । ସେ ନିଶ୍ଚିତ ଭାବେ ହୃଦୟଙ୍ଗମ କରିଥିବେ ଯେ, ଭାରତ ଓ ଚୀନ ଭଳି ଜନବହୁଳ, ବିରାଟ ରାଷ୍ଟ୍ରଗୁଡ଼ିକରେ କୃଷିକୁ ବେଶୀଦିନ ଅବହେଳା କରିହେବ ନାହିଁ । ସେବା କ୍ଷେତ୍ର କିଛିଦିନ ପାଇଁ ଅର୍ଥନୀତିରେ ଚମକ ଆଣିପାରେ କିନ୍ତୁ ସାମଗ୍ରିକ ଉନ୍ନତି ପାଇଁ କୃଷି ଓ ଶିଳ୍ପର ବିକାଶ ଅତ୍ୟନ୍ତ ଜରୁରୀ ।

ଓଡ଼ିଶା ମଧ୍ୟ ଏକ କୃଷିପ୍ରଧାନ ପ୍ରଦେଶ । ଜନସଂଖ୍ୟାର ୭୦ ଭାଗରୁ ବେଶୀ ଲୋକଙ୍କର ଜୀବିକା କୃଷି ଏବଂ ସେମାନେ ଗ୍ରାମାଞ୍ଚଳରେ ବାସ କରନ୍ତି । ଦେଶର ପ୍ରାୟ ୧୪ ପ୍ରତିଶତ ଜଳସମ୍ପଦ ଆମ ପ୍ରଦେଶରେ । ଏହାର ଜମି ଉର୍ବର । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଓଡ଼ିଶା ଖାଦ୍ୟଶସ୍ୟ ଉତ୍ପାଦନରେ ବଳକା ରାଜ୍ୟ ଥିଲା । ପଡ଼ୋଶୀ ରାଜ୍ୟଗୁଡ଼ିକୁ ଚାଉଳ ଚୋରା ଚାଲାଣ ହେଉଥିଲା । ବର୍ତ୍ତମାନ ସମ୍ପୂର୍ଣ୍ଣ ବିପରୀତ ଦୃଶ୍ୟକ୍ରମ- ଖାଦ୍ୟଶସ୍ୟ, ପନିପରିବା , ଫୁଲ, ମାଛ, ଅଣ୍ଡା ପ୍ରଭୃତି ପଡ଼ୋଶୀ ରାଜ୍ୟଗୁଡ଼ିକରୁ ଆମଦାନୀ ହେଉଛି । ଦିନେ ପହଞ୍ଚିବାରେ ବିଳମ୍ବ ହେଲେ ଓଡ଼ିଶାର ସହରଗୁଡ଼ିକରେ ଦରଦାମ ବୃଦ୍ଧିରେ ପ୍ରତିଫଳିତ ହୁଏ । ଓଡ଼ିଶାରେ ଅନାହାର ମୃତ୍ୟୁ କିଛି ଅଘଟଣ ନୁହେଁ । ପ୍ରଦେଶର ପ୍ରାୟ ୨ ପ୍ରତିଶତ ଲୋକ ସାରାବର୍ଷ ଭୋକିଲା ରହନ୍ତି, ୫ ପ୍ରତିଶତ ଫସଲ ପରବର୍ତ୍ତୀ ଅମଳରେ ଭୋକିଲା ରୁହନ୍ତି । ଏମାନଙ୍କ ମଧ୍ୟରୁ ବେଶୀଭାଗ କୃଷକ ଓ ଖଟିଖିଆ ମଜଦୁର । ଏସବୁର କାରଣ ହେଲା ପ୍ରଦେଶ ସରକାରଙ୍କର ବହୁଦିନ ଧରି କୃଷି ପ୍ରତି ଉଦାସୀନତା ଓ ଅବହେଳା । କେନ୍ଦ୍ରର ୟୁପିଏ ଓ ଏନ୍‌ଡ଼ିଏ ସରକାର ଭଳି ପ୍ରଦେଶର ମିଳିତ ସରକାର ମଧ୍ୟ କୃଷି ପ୍ରତି ସମ୍ବେଦନଶୀଳ ଆଭିମୁଖ୍ୟ ପ୍ରକାଶ କରିବାରେ ଅସମର୍ଥ । ଏ ବର୍ଷର ବଜେଟ୍ ଓ ନୂତନ ନୀତି - ଜଳସେଚନ ବର୍ଷ, ହୀରାକୁଦ ଅଞ୍ଚଳର ଚାଷୀଙ୍କ ପାଇଁ ଜଳଯୋଗାଣର ପ୍ରତିଶ୍ରୁତି ମନେହୁଏ ଆଗାମୀ ନିର୍ବାଚନକୁ ଲକ୍ଷ୍ୟରଖି ଘୋଷଣା ଓ ପ୍ରଚାର । କ୍ଷମତାରେ ଆଠବର୍ଷ ରହି କୃଷିକୁ ଅବହେଳା କରି ନିର୍ବାଚନ ପୂର୍ବରୁ କୃଷିର ଉପାଦେୟତା ବିଷୟରେ ବକ୍ତୃତା ଜନସାଧାରଣ ସହଜରେ ହଜମ କରିବା ସମ୍ଭବ ନୁହେଁ । ଜନବିତୃଷ୍ଣାର ବହ୍ନି ଜଳିବାରେ ବେଶୀ ସମୟ ଲାଗେନାହିଁ । ତେଣୁ କୃଷି ବିଶେଷଜ୍ଞ , ନେତାଙ୍କୁ ବିଶ୍ୱାସକୁ ନେଇ, ତୃଣମୂଳ ଅଭିଜ୍ଞତା ଓ ପୃଥିବୀର ଖାଦ୍ୟ ପରିସ୍ଥିତିକୁ ଧ୍ୟାନରେ ରଖି ଏକ ଦୂରଦୃଷ୍ଟିସମ୍ପନ୍ନ ଦୀର୍ଘସ୍ଥାୟୀ କୃଷିନୀତି ପ୍ରଣୟନର ଆବଶ୍ୟକତା ରହିଛି । ପରିବେଶ ଓ ଜଳର ସଂରକ୍ଷଣ ଭବିଷ୍ୟତ ପାଇଁ ନିହାତି ଜରୁରୀ । ଶିଳ୍ପାୟନ ଉତ୍ତମ । ଏହା ଜନସାଧାରଣଙ୍କୁ କ୍ରୟ କରିବାର କ୍ଷମତା ଦେଇପାରେ । କିନ୍ତୁ କ୍ଷୁଧା, ମଣିଷ ବଞ୍ଚିରହିବାର ଆଦିମ, ମୌଳିକ ପ୍ରବୃତ୍ତି । ପେଟରେ କ୍ଷୁଧା ଥିଲେ କ୍ରୋଧର ପ୍ରକାଶ ଏବଂ ବଞ୍ଚି ରହିବାର ଆଗ୍ରହ ପାଇଁ ଯେକୌଣସି ପନ୍ଥାକୁ ଆଦରେଇ ନେବାର ଉତ୍କଣ୍ଠା, ଉଦ୍‌ବେଗ ଓ ପଦକ୍ଷେପ ସ୍ୱାଭାବିକ । ଅତୀତରେ ଫରାସୀ ବିପ୍ଳବ ଓ ବର୍ତ୍ତମାନ ହାଇତି ଓ ସେନେଗାଲରେ ଦଙ୍ଗା, ହଙ୍ଗାମା ତାହା ପ୍ରମାଣିତ କରୁଛି ।

❋❋❋